Approved by
Board of Secondary Education, Orissa.

# ଆଦି ଯୁଗର ଗଳ୍ପ

ଅଷ୍ଟମ ଶ୍ରେଣୀ ନିମନ୍ତେ
( ଅତିରିକ୍ତ ସାହିତ୍ୟ )

ଲେଖକ :
ଶ୍ରୀ କୃଷ୍ଣଚନ୍ଦ୍ର କର

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍
କଟକ-୨

## ପୂର୍ବାଭାଷ—

ଭାରତର ପ୍ରାଚୀନତମ କାଳକୁ ବ୍ୟାପକ ଅର୍ଥରେ 'ଆଦ୍ୟ ଯୁଗ' ଆଖ୍ୟା ଦିଆଯାଇଥିଲେହେଁ ଐତିହାସିକ ପ୍ରାଧାନ୍ୟ ଦୃଷ୍ଟିରୁ ଅନେକ ତାହାକୁ ତିନି-ଗୋଟି ଯୁଗର ସମଷ୍ଟି ବୋଲି ନିର୍ଦ୍ଦେଶ କରନ୍ତି । ପ୍ରଥମଟି ଆଧ୍ୟାତ୍ମ ଯୁଗ, ଦ୍ୱିତୀୟଟି ଋଷି ଯୁଗ ଓ ଶେଷଟି ରାଜନ୍ୟ ଯୁଗ ।

'ଆଧ୍ୟାତ୍ମ ଯୁଗରେ ଅନୁସନ୍ଧିତ୍ସୁ ଆର୍ଯ୍ୟଋଷିଗଣ ଗିରିଗୁହାର ନିଭୃତ କକ୍ଷରେ ବସି କେବଳ ଚିନ୍ମୟ-ଚିନ୍ତାରେ ନିମଜ୍ଜିତ ଥିଲେ । ସାଂସାରିକ ବା ପାରିବାରିକ ମୋହ ସେମାନଙ୍କ ହୃଦୟକୁ ପ୍ରଭାବିତ କରିବା ଦୂରର କଥା, ସ୍ପର୍ଶ ସୁଦ୍ଧା କରି ପାରି ନ ଥିଲା ।

ଏହାପରେ ଋଷିମାନେ ଆତ୍ମଲବ୍ଧ ଆଧ୍ୟାତ୍ମିକ ସତ୍ୟ ବା ଜ୍ଞାନରାଶିକୁ ନିଜଠାରେ ଆବଦ୍ଧ ନ ରଖି ସେଗୁଡ଼ିକୁ ଶିଷ୍ୟମଣ୍ଡଳୀସାହାଯ୍ୟରେ ଲୋକ-ସମାଜରେ ବିତରଣ କରିବାକୁ ପ୍ରୟାସ କଲେ । ଏହି ଉଦ୍ଦେଶ୍ୟରେ ସେମାନେ ବିଭିନ୍ନ ବନାଞ୍ଚଳରେ ଅସଂଖ୍ୟ ଶିକ୍ଷାଶ୍ରମ ସ୍ଥାପନ କରି ଜ୍ଞାନଦାନ ସଙ୍ଗେ ସଙ୍ଗେ ସଂଯତ ଗାର୍ହସ୍ଥ୍ୟଧର୍ମ ମଧ୍ୟ ପାଳନ କଲେ । ଏହି 'ଋଷି ଯୁଗ'ରେ ଋଷିକୁମାର-ମାନେ ତପଶ୍ଚରଣଦ୍ୱାରା ଋଷିତ୍ୱ ଲାଭ କରୁଥିଲେ ଏବଂ ସେମାନଙ୍କ ବୈବାହିକ ବନ୍ଧନ ସେହି ଋଷିଗୋଷ୍ଠୀମଧ୍ୟରେହିଁ ପ୍ରାୟଶଃ ସୀମାବଦ୍ଧ ରହୁଥିଲା ।

'ରାଜନ୍ୟ ଯୁଗ'ରେ ଋଷିଗୋଷ୍ଠୀ ସହିତ ରାଜଗୋଷ୍ଠୀର ବୈବାହିକ ସମ୍ବନ୍ଧ ପ୍ରତିଷ୍ଠା ଏକ ଯୁଗାନ୍ତକାରୀ ଘଟଣା । ତାହାରି ଫଳରେ ଋଷିକୁଳର ପ୍ରାଧାନ୍ୟ ଖର୍ବତା ପ୍ରାପ୍ତ ହୋଇ ରାଜକୁଳର ପ୍ରାଧାନ୍ୟ ଓ ଅଖଣ୍ଡ ପ୍ରତିପତ୍ତି ଅପରିସୀମଭାବରେ ବର୍ଦ୍ଧିଷ୍ଣୁ ହୋଇଉଠିଲା । ଋଷିମାନଙ୍କ ସାତ୍ତ୍ୱିକ ଜୀବନରେ ରାଜସିକ ତଥା ତାମସିକ ଭାବର ପ୍ରଭୂତ ପ୍ରଭାବ ପଡ଼ିଲା ଏବଂ ସେମାନେ ଅଧିକାଂଶତଃ ରାଜାନୁଗ୍ରହର ଶରବ୍ୟ ହୋଇପଡ଼ିଲେ । ଋଷି ସମାଜର ଏହି ଅଧୋଗତି ଯୁଗରେ କେତେକ ରାଜାମହାରାଜା ବ୍ରହ୍ମତତ୍ତ୍ୱାଦି ଆଧ୍ୟାତ୍ମିକ ଜ୍ଞାନର ଅଧିକାରୀ ହେବାର ପ୍ରକୃଷ୍ଟ ସୁଯୋଗ ପାଇପାରିଲେ ।

ଉପରଲିଖିତ ତିନି ଯୁଗର ଏକ ଧାରାବାହିକ ଚିତ୍ର ଉପନିଷଦ ଓ ବେଦରୁ ଗୃହୀତ କେତୋଟି ଆଖ୍ୟାୟିକା ସାହାଯ୍ୟରେ ଏହି କ୍ଷୁଦ୍ର ପୁସ୍ତକରେ ରୂପାୟିତ ହୋଇଅଛି । ଏଗୁଡ଼ିକରୁ ଅତି ପ୍ରାଚୀନ କାଳର ସଂସ୍କୃତି, ଶାସନରୀତି, ଲୋକପ୍ରଥା, ନୀତିନିୟମ, ଆଚରଣନିଷ୍ଠାଦିର ବହୁ ଉପାଦେୟ ଉପାଦାନ ମିଳେ ।

—ଲେଖକ—

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ଆଦି ଯୁଗର ଋଷି | ୧ |
| ୨ । ଅଦୃଶ୍ୟ ବିଶ୍ୱନିର୍ମାତା | ୧୫ |
| ୩ । ଜିଜ୍ଞାସୁ ଋଷିବାଳକ | ୨୩ |
| ୪ । ମୃତ୍ୟୁମୁଖରୁ ମୁକ୍ତି | ୩୩ |
| ୫ । ଇନ୍ଦ୍ରଉପାସନାର ଫଳ | ୪୭ |
| ୬ । ଋଷିରକ୍ତ ଓ ରାଜରକ୍ତର ସଂଯୋଗ | ୫୭ |
| ୭ । ପତିବ୍ରତା ଋଷିକନ୍ୟା | ୬୮ |
| ୮ । ସନ୍ତାନକାମୀ ତପସ୍ୱୀ | ୮୧ |
| ୯ । ଅନ୍ୟାୟ ବିଚାରରୁ ଦେଶର ଦୁର୍ଦ୍ଦଶା | ୯୧ |
| ୧୦ । ପୁରୁରବା ଓ ଉର୍ବଶୀ | ୧୦୨ |


———

# ଆଦ୍ୟ ଯୁଗର ଋଷି

—୧—

ପୃଥିବୀର ପ୍ରଥମ ଯୁଗ……

ସେ ଯେ କେତେ ହଜାର ବର୍ଷ ତଳର କଥା, ହିସାବ କରି କହି ହେବ ନାହିଁ । ପୃଥିବୀର ସଭ୍ୟତା ପହିଲେ ଆମରି ଜନ୍ମଭୂମି ଭାରତବର୍ଷରେ ଆରମ୍ଭ ହୋଇଥିଲା ସତ; ମାତ୍ର ଯେଉଁ ଆଦ୍ୟ ଯୁଗର କଥା ଏଠାରେ କୁହାଯାଉଛି, ସେତେବେଳେ ଏହି ଭାରତରେ ମଧ୍ୟ ସଭ୍ୟତାର ଆଲୋକ ପଡ଼ି ନ ଥିଲା । ଚାରିଆଡ଼େ ଘୋର ବଣଜଙ୍ଗଲ—ନିବିଡ଼ ଅନ୍ଧକାର । ସେହି ବଣଜଙ୍ଗଲ ମଧ୍ୟରେ ଥିଲେ ଅସଂଖ୍ୟ ଭୀଷଣ ଜନ୍ତୁ, ଆଉ ସେମାନଙ୍କ ସଙ୍ଗେ ରହୁଥିଲେ ସେହିପରି ଭୀଷଣ ଅନେକପ୍ରକାର ବଣୁଆ ଲୋକ । ଜନ୍ତୁଙ୍କ ପରି ତାଙ୍କର ମଧ୍ୟ ଚରଭୂମି ଥିଲା ହିଗନ୍ତବିସ୍ତୃତ ସେହି ନିବିଡ଼ ଅରଣ୍ୟାନୀ ।



ଆର୍ଯ୍ୟ କୁଟୀର ଉପରେ ଅସୁରମାନଙ୍କର ଆକ୍ରମଣ

ସେ କାଳର ମଣିଷ, ବୃକ୍ଷଲତା, ଜନ୍ତୁଜାନୁଆର, କେହି ଏବେ ଜୀବିତ ନାହାନ୍ତି—ସର୍ବଦ୍ରଷ୍ଟା ମୂକସାକ୍ଷୀ ହୋଇ ଏକମାତ୍ର ଠିଆ ହୋଇ ରହିଛି ମସ୍ତକରେ ବରଫର ରୂପେଲି ମୁକୁଟ ଧରି ଶୈଳଶ୍ରେଷ୍ଠ କୁଳବୃଦ୍ଧ ହିମାଳୟ । ଏକା ତାହାରି ପେଟରେ ଲୁଚି-ରହିଛି ଆମ ଦେଶର ପ୍ରାଚୀନ ଗୁପ୍ତ ରହସ୍ୟ, ଯାହା ଏପର୍ଯ୍ୟନ୍ତ ସଭ୍ୟ ଦୁନିଆର ଅଜ୍ଞାତ ।

ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ ସିନ୍ଧୁନଦୀ ସେ ଯୁଗରେ ମଧ୍ୟ ବର୍ତ୍ତମାନ ପରି ପ୍ରବାହିତ ହେଉଥିଲା । ତାହାରି କୂଳରେ କେତେ କାଳପରେ ଦଳେ ଲୋକ ଆସି ବାସ କଲେ । ସେମାନେ ପୂର୍ବର ବଣୁଆ ଲୋକଙ୍କ ପରି ଯାଯାବର ନ ଥିଲେ । ସେମାନେ ଥିଲେ ସଭ୍ୟ, ଆଉ ତାଙ୍କର ଚେହେରା ଥିଲା ସୁନ୍ଦର ! ନିଜକୁ ନିଜେ ସେମାନେ ବୋଲାଇଲେ 'ଆର୍ଯ୍ୟ' ।

ଆର୍ଯ୍ୟମାନେ ଅତି ବଳବାନ୍ । ସେମାନଙ୍କ ମଧ୍ୟରେ ଖୁବ୍ ଏକମେଳ ଥିଲା । ଦଳେ ଦଳେ ବଣୁଆ ଲୋକଙ୍କ ସହିତ ବେଳେ-ବେଳେ ସେମାନଙ୍କର ଲଢ଼େଇ ଲାଗିଯାଏ । ଅନେକ ଜାତିର ବଣୁଆ ଲୋକ ତ ଥାଆନ୍ତି, ତେଣୁ ଆର୍ଯ୍ୟମାନେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ନାମ ଦେଇଥିଲେ 'ଦୈତ୍ୟ', ଆଉ କେତେକଙ୍କୁ 'ଦାନବ', ପୁଣି ଆଉ କେତେକଙ୍କୁ 'ରାକ୍ଷସ' । ଏ ତିନି ଶ୍ରେଣୀର ବଣୁଆ ଲୋକଙ୍କୁ ସେମାନେ ସାଧାରଣ ନାମ ଦେଇଥିଲେ 'ଅସୁର' ।

ଅସୁରମାନେ ଥିଲେ ବଡ଼ ବାଣୁଆ ଓ ବଳରେ ମଧ୍ୟ ଭାରି ଟାଣୁଆ । ବାଘ ସିଂହଙ୍କ ସଙ୍ଗରେ ଯେ ହାତାହାତି ଲଢ଼େଇ କରିବା

ଲୋକ, ସେ ବା କାହିଁକି ଆର୍ଯ୍ୟଙ୍କୁ ଡରିବେ ? ତେଣୁ ମଝିରେ ମଝିରେ ସେମାନେ ଦଳବାନ୍ଧି ଆର୍ଯ୍ୟମାନଙ୍କ ଗାଆଁ ଗଣ୍ଡାରେ ପଶି ଉତ୍ପାତ ଆରମ୍ଭ କରିଦିଅନ୍ତି । ଆର୍ଯ୍ୟମାନେ ଅତି ବୁଦ୍ଧିମାନ୍ ଥିବାରୁ ସେମାନଙ୍କୁ ଲଢ଼େଇରେ ହଟେଇ ଦୂରକୁ ତଡ଼ିଦିଅନ୍ତି ।

ଅସୁରମାନଙ୍କ ଦଳରେ ମଧ୍ୟ ଜଣେ ଜଣେ ଭଲ ମଣିଷ ଥିଲେ । ସେମାନେ ଆର୍ଯ୍ୟମାନଙ୍କ କାମ ଓ ଗୁଣକୁ ପସନ୍ଦ କରୁଥିଲେ । ଆର୍ଯ୍ୟମାନେ ଏହିଭଳି ଅସୁରଙ୍କୁ ଉପଦେଶ ଦେଇ ନିଜ ପଟକୁ ଆଉଜେଇନେଲେ । ଫଳରେ ସେହି ଅସୁରମାନେ ବଣୁଆ ଲୋକଙ୍କ ଦଳ ଛାଡ଼ି ଆର୍ଯ୍ୟ ସମାଜରେ ମିଶିଲେ ଏବଂ ଆର୍ଯ୍ୟମାନଙ୍କ ଗ୍ରାମରେ ରହି ସେମାନଙ୍କ ସହିତ ଭାଇ ଭଳି ଚଳିଲେ ।

ବଣୁଆ ଜାତି ଓ ଆର୍ଯ୍ୟମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ବରାବର ଲାଗିରହିଥିଲେ ମଧ୍ୟ ସେମାନଙ୍କ ଭିତରେ ସମୟ ସମୟରେ ଏହିପରି ବନ୍ଧୁତାର ସୃଷ୍ଟି ହେଉଥିଲା ।

—୨—

ଶରତର ନିର୍ମଳ ନିର୍ମେଘ ଆକାଶ······

ସନ୍ଧ୍ୟା ହେବା ସଙ୍ଗେ ସଙ୍ଗେ ଉପରକୁ ଉଠିଲା ପୂର୍ଣ୍ଣିମାର ବିମଳ ଚନ୍ଦ୍ର । ଆର୍ଯ୍ୟପଲ୍ଲୀର କୁଟୀରଗୁଡ଼ିକ ଚନ୍ଦ୍ରାଲୋକରେ ଚକ୍‌ଚକ୍ ଦେଖାଗଲା । ସମ୍ମୁଖରେ ସିନ୍ଧୁ ନଦୀର କଳ କଳ ପ୍ରବାହିତ ଜଳରାଶି ଉପରେ ଜ୍ୟୋତ୍ସ୍ନାର ଅପୂର୍ବ ଲୀଳା । ଗୋଟିଏ ଦୁଇଟି ପକ୍ଷୀ କଅଁା ନିଦରୁ ଉଠି ମଧ୍ୟେ ମଧ୍ୟେ କୌମୁଦୀ-ଉଦ୍ଭାସିତ

ଆକାଶ ବକ୍ଷରେ ପାଗଳ ପରି ଉଡ଼ି ବୁଲୁଥାନ୍ତି । ସ୍ୱର୍ଗଆଡ଼ କି ସୁନ୍ଦର, କି ଲୋଭନୀୟ, କି ହୃଦୟସ୍ପର୍ଶୀ !



[ ପ୍ରକୃତିର ବୈଚିତ୍ର୍ୟରେ ବିସ୍ମୟମୁଗ୍‌ଧ ଋଷିବୃନ୍ଦ ]

ଗୋଟିଏ କ୍ଷୁଦ୍ର ଆର୍ଯ୍ୟଗ୍ରାମ । ନରନାରୀ, ବୃଦ୍ଧବୃଦ୍ଧାମାନେ ଗ୍ରାମଦାଣ୍ଡରେ ବସି ଆନନ୍ଦରେ କଥାବାର୍ତ୍ତା ହେଉଥାନ୍ତି । ଚଞ୍ଚଳମତି ବାଳକବାଳିକାମାନେ ଖୋଲା ପଡ଼ିଆରେ ଇତସ୍ତତଃ ଧାଁଧପଡ଼ କରି ଖେଳରେ ମତ୍ତ ଥାଆନ୍ତି । ଏହି ସମୟରେ 'ଚେତସ' ନାମରେ ଜଣେ ଦୀର୍ଘକାୟ ବଳିଷ୍ଠ ଯୁବକ ତାର ପିତାମହ ନିକଟକୁ ଧାଇଁଯାଇ ପଚାରିଲା :

"କୁହ ଦେଖି, ଏ ସୁନ୍ଦର ଜଗତ, ଏ ସୁନ୍ଦର ସୃଷ୍ଟି କିଏ ତିଆରି କରିଛି ? କେଉଁଠୁ ଏସବୁ ଆସୁଛି ?"

ଏହାହିଁ କୌତୂହଳୀ ଜଗତର ପ୍ରଥମ ପ୍ରଶ୍ନ । ସବୁ କଥାଭାଷା ସବୁ ଖେଳକୌତୁକ ମୁହୂର୍ତ୍ତକେ ବନ୍ଦ ହୋଇଗଲା । ଯେ ଯେଉଁଠି ଥିଲେ, ସମସ୍ତେ ଆସି ଚେତସ ପାଖରେ ରୁଣ୍ଡ ହେଲେ । ପରସ୍ପର-ମଧ୍ୟରେ କୁହାକୁହି ହେବାକୁ ଲାଗିଲେ :

"ଏମାନ କିଏ ଗଢ଼ିଲା ? ସେ ଲୋକ କିଏ, କେଉଁଠି ଅଛି ?"

ମାତ୍ର ଏ ପ୍ରଶ୍ନର ଉତ୍ତର କିଏ ଦେବ ? କେହି କିଛି କହି ପାରିଲେ ନାହିଁ । ପୁରୁଖା ପୁରୁଖା ଲୋକେ ବହୁତ ମୁଣ୍ଡ ଘୂରେଇଲେ, କିଛି ଫଳ ହେଲାନାହିଁ । ସମସ୍ତଙ୍କ ମନରେ ଏଇ କଥାଟି କେବଳ ଗୋଳେଇ ହୋଇ ରହିଲା ।

ଖରାଦିନିଆ ବଣର ଶୁଖିଲା ଝାଟିଲଟିରେ ନିଆଁ ଧରିଲେ ହୁହୁ ହୁହୁ ତାହା ଚରିଯାଇ ଚାରିଆଡ଼େ ମାଡ଼ିଯାଏ । ସେହିପରି ଯୁବକ ଚେତସର ମନଭିତରେ ଏହି ଯେଉଁ ଜିଜ୍ଞାସାର ନିଆଁଟିକ ସର୍ବପ୍ରଥମେ ଦପ୍‌କିନା ଜଳିଉଠିଲା, ଖୁବ୍ ଅଳ୍ପ ଦିନମଧ୍ୟରେ ତାହା ସାରା ଆର୍ଯ୍ୟଜାତି ମଧ୍ୟରେ ଖେଳିଗଲା ।

ପ୍ରତ୍ୟେକ ଆର୍ଯ୍ୟସନ୍ତାନ, ଯେ ଯେଉଁଠି ଥିଲେ, ଏଣିକି ସବୁଠାରେ ଏହି କଥାଟି ଭାବିବସିଲେ । ସେମାନଙ୍କ ପ୍ରଶ୍ନର ଆକାର ଆହୁରି ବଢ଼ିଗଲା । ଯେତେ ଭାବିଲେ, ପ୍ରଶ୍ନଟି ସେତେ ଜଟିଳ ହେବାକୁ ଲାଗିଲା ।

ପୂର୍ବ-ଆକାଶରେ ରକ୍ତବର୍ଣ୍ଣର ଥାଳି ପରି ସୂର୍ଯ୍ୟ ହଠାତ୍ ଉଦିତ ହେଲେ ଜିଜ୍ଞାସୁ ଆର୍ଯ୍ୟମାନଙ୍କ କଣ୍ଠରୁ ପ୍ରଶ୍ନ ଉଠିଲା:

"ପାହାଡ଼ର ଶିଖରପରକୁ କିଏ ସୂର୍ଯ୍ୟକୁ ପଠାଇଲା ?"

ପକ୍ଷୀମାନେ ମାଡ଼ ସ୍ତୁତି ଉଡ଼ିବୁଲିଲେ, ଗ୍ରେଟ ଗ୍ରେଟ ଫୁଲ-ଗୁଡ଼ିକ ଫୁଟିଉଠିଲେ, ପ୍ରଜାପତି ଫୁଲ ଗଛଗୁଡ଼ିକରେ ଘେରିଗଲେ, ଶିଶୁଗଣ ପ୍ରଶ୍ନ କଲେ :

"ଏ ପକ୍ଷୀ, ଏ ଫୁଲ, ଏ ପ୍ରଜାପତି କିଏ ଗଢ଼ିଲା ? ଏମାନେ କେଉଁଠୁ ଆସିଲେ ? ଏଗୁଡ଼ିକୁ କିଏ ଏଡ଼େ ସୁନ୍ଦର ରୂପ ଦେଲା ? ପକ୍ଷୀର ଗଳାରେ ଏ ମିଠା ସ୍ୱର କିଏ ଖଞ୍ଜିଲା ?"

ଦଳେ ଦଳେ ଯୁବକ ଧନୁଶର ଧରି ଶିକାର କରିବାକୁ ବଣରେ ବୁଲୁଥିବାବେଳେ ଝରଣାଟିଏ ଦେଖିଲେ ବା ଜୀବଜନ୍ତୁ ଭେଟିଲେ ପରସ୍ପରକୁ ପଚାରିଲେ :

"ଏ ଝରଣା କିଏ ସୃଷ୍ଟି କଲା ? ଏତେ ଜୀବଜନ୍ତୁ କାହୁଁ ଆସିଲେ ?"

ଗୋଠ ଚରାଇବାକୁ ଯାଇ ରଖୁଆଳମାନେ ଗଛ ଛାଇରେ ଶ୍ରମ ମେଣ୍ଟାଉଥିବାବେଳେ କୁହାକୁହି ହେଲେ :

"ଗୋରୁ, ଘୋଡ଼ା, ମଇଁଷି, ଛେଳି, ମେଣ୍ଢା କେଉଁଠୁ କିଏ ଆମ ପାଖକୁ ପଠାଉଛି ?"

ମାତା କୋଳଶିଶୁକୁ ଖେଳାଉଥିବା ସମୟରେ ତାର ହସହସ ମୁହଁ ଦେଖି ପାଖ ଲୋକକୁ ପଚାରିଲା :

"ଆହା, ଏତେ ଏତେ କୌତୁକିଆ ପିଲାଙ୍କୁ କିଏ କେଉଁଠି ଗଢ଼ି ପୃଥିବୀକୁ ପଠାଉଛି ?"

ବୁଢ଼ାବୁଢ଼ୀମାନେ ଏକାଠି ରୁଣ୍ଡ ହୋଇ ଆଲୋଚନା କରିବସିଲେ :

"ଆମେ ସବୁ କପରେ ବଞ୍ଚୁଛେଁ ? ଜନ୍ମ ହେଲେ ଲୋକ ମରେ କାହିଁକି ? ମୃତ୍ୟୁପରେ ମଣିଷ କେଉଁଠାକୁ ଯାଏ ? ବୁଢ଼ା ହେଲେ ସିନା ଲୋକ ମରେ; କନ୍ତୁ ଷ୍ଟୋଟ ଷ୍ଟୋଟ ଶିଶୁ, ସୁନ୍ଦର ସୁନ୍ଦର ତରୁଣ ଏତେ ଚଞ୍ଚଳ ମରଯାଉଛନ୍ତି କାହିଁକି ? ଏତେ ବଡ଼ ଆକାଶ, ତହିଁରେ ସୂର୍ଯ୍ୟ-ଚନ୍ଦ୍ର-ତାରା, ମେଘ ପବନ, ଏମାନ କାହାର ସର୍ଜନା ? ଏ ସୁନ୍ଦର ସଂସାରଟି କଏ ଗଢ଼ିଲା ?"

"ଥୋକେ ପୁଣି ଆହୁରି ଭିତରକୁ ଭେଦ ବିଚାର କଲେ :

"ଜାଅନ୍ତା ବାଘ ମୁହଁରୁ ବଞ୍ଚିବାର, ତା ହାବୁଡ଼ରୁ ଜବୁରିବାର ବାଟ ଅଛି; ମାତ୍ର ଅଦୃଶ୍ୟ ମୃତ୍ୟୁ ବାଘର ମୁହଁରୁ ଖସିବାର ତ ବାଟ ନାହିଁ ? ତେବେ କଣ କଲେ ତାହାଠାରୁ ରକ୍ଷା ମିଳିବ ? ଯାହାକୁ ପାଇଲେ ମଣିଷ ଅମର ହୋଇ ସବୁଦିନେ ରହିବ, ଚାଲ ତାକୁ ଖୋଜିବା ।"

ଭାବନାର ଅନ୍ତ ନାହିଁ । ଜାଣିବାର ଆକାଂକ୍ଷା ମଣିଷ ମନରେ ବଡ଼ ପ୍ରବଳ । ଆର୍ଯ୍ୟମାନେ ଏହିପରି କେତେ କଣ ଭାବିଲେ, ନିଜ ନିଜ ମଧ୍ୟରେ କେତେ ପ୍ରଶ୍ନ ପଚରାପଚରି ହେଲେ, ମାତ୍ର କୌଣସି ଥଳକୂଳ ପାଇଲେ ନାହିଁ । ଅଧିକେ ସେମାନଙ୍କ ଭାବନାର ସୂଅ ବଢ଼ିଲା ।

— ୩ —

ବର୍ଷ ପରେ ବର୍ଷ ବିତିଗଲା……

ଶେଷରେ ଆର୍ଯ୍ୟମାନେ ଏପରି ବିକ୍ଷିପ୍ତ ଚିନ୍ତା ଛାଡ଼ିଦେଇ ଗୋଟିଏ ନିର୍ଦ୍ଦିଷ୍ଟ ଧାରାରେ ଭାବିବାକୁ ସ୍ଥିରକଲେ । ସେମାନଙ୍କ ମଧ୍ୟରେ ଯେଉଁ କେତେଜଣଙ୍କର ଜ୍ଞାନ ଟିକିଏ ପ୍ରଖର ଥିଲା, ସେମାନେ କହିଲେ :

"ଏ ବିଶ୍ୱସଂସାର ତ ଏଡ଼େ ବିରାଟ, ଏଡ଼େ ମନୋହର; ଯେ ଏହି ବିଚିତ୍ର ଛବିକୁ ନିଜ ହାତରେ ଫୁଟାଇଛି, ସେ କେଡ଼େ ବଡ଼, କେଡ଼େ ସୁନ୍ଦର ନ ହୋଇଥିବ ! ଆମେ ଯଦି ବିଶ୍ୱ ଛବିକୁ ସେହି ଗୋପନ କାରିଗରକୁ ଚିହ୍ନି ପାରିବା, ତାହାହେଲେ ବିଶ୍ୱ-ସଂସାରର ସବୁ ରହସ୍ୟ ଆମ ଆଗରେ ସୁସ୍ପଷ୍ଟ ହୋଇପାରିବ । ଏବେ ଆସ, ସେହି ଦିଗରେ ଚେଷ୍ଟା କରିବା ।"

ମନ ମାନିଲା ଭଳି ଗୋଟାଏ ଉପାୟ ଏତେ ଦିନେ ମିଳିଲା । ସେମାନେ ବର୍ଷ ବର୍ଷ ଲାଗି ଅଦୃଶ୍ୟ କାରିଗରର ଅନ୍ୱେଷଣ କରି ବୁଲିଲେ; ମାତ୍ର ସବୁରି ଆଖିରେ ଧୂଳି ଦେଇ ସେହି ଅଦ୍ଭୁତ ବିଶ୍ୱଶିଳ୍ପୀ କେଉଁଠି ଯେ ଲୁଚିରହିଥିଲା, କେହି ଖୋଜି ବାହାରି କରିପାରିଲେ ନାହିଁ । ଏଥର ଅତି ବୁଦ୍ଧିମାନ୍ କେତେ ଜଣ ଆର୍ଯ୍ୟ କହିଲେ :

"ଏପରିଭାବରେ ଖୋଜି କଲୁ ଲାଭ ନାହିଁ । ସହଜରେ ମିଳିବାର ବସ୍ତୁ ହୋଇଥିଲେ ତାହା ଏତେ ଦିନଯାଏ ପ୍ରଚ୍ଛନ୍ନ ରହି ନ ଥାନ୍ତା । ଏବେ ଆସ, ସମସ୍ତେ ମିଶି ଧ୍ୟାନ କରିବା । ସେଥିରେ ବା ଫଳ ମିଳିପାରେ ।"

ସବୁ ଜଞ୍ଜାଳରୁ ନିଜକୁ ଟାଣିଟାଣି କେବଳ ଗୋଟିଏ ବିଷୟରେ ମନକୁ ପୂରାପୂରି ଲଗେଇ ନିଶ୍ଚଳଭାବରେ ଗଭୀର ଚିନ୍ତା କରିବାର ନାମ 'ଧ୍ୟାନ' । ଏହା ସହଜ କାମ ନୁହେଁ । ସମସ୍ତଙ୍କଦ୍ୱାରା ଏହା ହୋଇପାରେ ନାହିଁ । ତେଣୁ ଅଳ୍ପ କେତୋଟି ଆର୍ଯ୍ୟ ଏହି କଷ୍ଟକର କାର୍ଯ୍ୟରେ ଲାଗିପଡ଼ିବାକୁ ପଣ କଲେ ।

କୋଳାହଳଶୂନ୍ୟ ପାହାଡ଼କୋଳର ନିର୍ଜ୍ଜନ ନଦୀକୂଳରେ ପ୍ରସ୍ତର ଆସନରେ ବସି ସେହି କେତେଜଣ ଆର୍ଯ୍ୟ ଚକ୍ଷୁ ମୁଦ୍ରି ନିବିଷ୍ଟମନରେ ଧ୍ୟାନ କରିବାକୁ ଲାଗିଲେ । ଦିନପରେ ଦିନ, ମାସ-

ପରେ ମାସ ଅତିବାହିତ ହୋଇଗଲା । ଶେଷରେ ସେମାନଙ୍କ ପରିଶ୍ରମ ସଫଳ ହେଲା । ଅନ୍ତରମଧ୍ୟରେ ସେମାନେ ଏକ ଅପୂର୍ବ ଜ୍ୟୋତି ଦେଖିପାରିଲେ । ସେମାନଙ୍କର ଚକ୍ଷୁ ସ୍ୱତଃ ଖୋଲିଗଲା ।

ସମ୍ମୁଖରେ ଅଗଣିତ ନରନାରୀ ଆକୁଳ ପ୍ରତୀକ୍ଷାରେ ବସି-ରହିଥିଲେ । ସେମାନେ ଦେଖିଲେ, ଋଷି ଆର୍ଯ୍ୟମାନଙ୍କର ମୁଖ ଏକ ନୂତନ ସ୍ୱର୍ଗୀୟ ଆଭାରେ ଉଜ୍ଜ୍ୱଳ ହୋଇଉଠିଛି । ସେହି ବିରାଟ ଜନତାକୁ ସମ୍ବୋଧନ କରି ଋଷିବୃନ୍ଦ କହିଲେ :

"ଯେଉଁ ସତ୍ୟ ପାଇଛୁ ସମସ୍ତେ ଶୁଣ ! ବିଶ୍ୱରେ କେହି ଶ୍ରେଷ୍ଠ ନୁହେଁ, କେହି ହୀନ ନୁହେଁ—ସମସ୍ତେ ଅମୃତର ସନ୍ତାନ । ଅନ୍ଧକାରର ପରପାରରେ କୋଟି ସୂର୍ଯ୍ୟରୁ ଅଧିକ ତେଜସ୍ୱୀନ୍ ଏକ ମହାନ୍ ପୁରୁଷଙ୍କୁ ଆମେ ଦେଖିପାରିଛୁଁ । ତାଙ୍କୁ ଜାଣିଲେ ମଣିଷ ଅମର ହୋଇଯାଏ । ଆମେ ସେହି ଜ୍ୟୋତିର୍ମୟ ପୁରୁଷଙ୍କୁ ଏତେଦିନେ ଜାଣିପାରିଛୁଁ ।"

ଆର୍ଯ୍ୟ ଜାତିର ଅଭିଯାନ ଜୟଯୁକ୍ତ ହେଲା । ସମବେତ ନରନାରୀ ଆନନ୍ଦର କୋଳାହଳରେ ପାହାଡ଼ବନ ଫଟାଇ-ଦେଲେ । ବାସ୍ତବରେ ସେଦିନଟି ବିଶ୍ୱଜଗତର ସର୍ବପ୍ରଥମ ଉତ୍ସବର ଦିବସ । ସବୁଠାରୁ କଠିନ ଓ ସବୁଠାରୁ ବଡ଼ ସତ୍ୟ ସେହି ଦିନହିଁ ଉଦ୍ଭାବିତ ହେଲା । ଯେଉଁ କେତେଜଣ ଋଷି ସେହି ସତ୍ୟର ସନ୍ଧାନ ପାଇଥିଲେ, ଆର୍ଯ୍ୟମାନେ ତାଙ୍କର ନାମ ଦେଲେ 'ଋଷି' ।

—୪—

ଅତଏବ ଭାବରେ ଧ୍ୟାନ ଚାଲିଲା······

ଏହି ଋଷିମାନେ ଧ୍ୟାନବଳରେ ଆହୁରି ଅନେକ ନୂଆ ନୂଆ ସତ୍ୟ ପ୍ରକାଶ କଲେ । ସେମାନେ ଯେଉଁସବୁ ଜ୍ଞାନ ପାଇଲେ,

ପ୍ରତ୍ୟେକର ନାମ ହେଲା 'ବେଦ' । ମନୁଷ୍ୟ-ସମାଜର ଉପକାର ପାଇଁ ସେହି ବେଦ ବା ଜ୍ଞାନଗୁଡ଼ିକୁ ସାଇତି ରଖିବାର ପ୍ରୟୋଜନ ଆର୍ଯ୍ୟମାନେ ଅନୁଭବ କଲେ । ସେହି ଉଦ୍ଦେଶ୍ୟସାଧନ ଲାଗି ଜଣେ ଜଣେ ଋଷି ଦଳେ ଦଳେ ଛାତ୍ର ଗ୍ରହଣ କଲେ । ଗୁରୁମୁଖରୁ ଶୁଣି



[ ଋଷିଙ୍କଠାରୁ ଛାତ୍ରମାନଙ୍କର ବେଦଶିକ୍ଷା ]

ଶୁଣି ଶିଷ୍ୟମାନେ ବେଦ ଶିଖିଲେ । ସେହି ଶିଷ୍ୟମାନେ ବଡ଼ ହୋଇସିବାପରେ ସ୍ୱତନ୍ତ୍ରଭାବରେ ଛାତ୍ର ରଖି ସେମାନଙ୍କୁ ବେଦ ଶିକ୍ଷା ଦେଲେ । ଏହିରୂପେ ତୁଣ୍ଡରୁ ତୁଣ୍ଡ ହୋଇ ସାରା ଦେଶରେ ବେଦସବୁ ପ୍ରଚଳିତ ହେଲା । ଶୁଣି ଶୁଣି ଶିଖାଯାଉଥିଲା ବୋଲି ବେଦର ଆଉ ଗୋଟିଏ ନାମ ହେଲା 'ଶ୍ରୁତି' ।

ବହୁ ଯୁଗପରେ ଭାରତରେ ଜନ୍ମଗ୍ରହଣ କଲେ ଜଣେ ଅସାଧାରଣ ପ୍ରତିଭାଶାଳୀ ଋଷି—ତାଙ୍କ ନାମ 'କୃଷ୍ଣ' । ଏପର୍ଯ୍ୟନ୍ତ ପୃଥିବୀରେ ତାଙ୍କ ପରି ଶକ୍ତିସମ୍ପନ୍ନ ପଣ୍ଡିତ ଖୁବ୍ କମ୍ ଦେଖା ଦେଇଛନ୍ତି । ସେକାଳର ବିଖ୍ୟାତ ଋଷି 'ପରାଶର' କୃଷ୍ଣଙ୍କର ପିତା ଓ କେଉଟକନ୍ୟା 'ସତ୍ୟବତୀ' ତାଙ୍କର ମାତା । ଗୋଟିଏ ଦ୍ୱୀପରେ କୃଷ୍ଣଙ୍କର ଜନ୍ମ ହୋଇଥିଲା ବୋଲି ତାଙ୍କର ଦ୍ୱିତୀୟ ନାମ ହେଲା 'କୃଷ୍ଣ-ଦ୍ୱୈପାୟନ' ।

ଋଷି କୃଷ୍ଣ-ଦ୍ୱୈପାୟନ ଦେଖିଲେ, ଆର୍ଯ୍ୟଋଷିମାନଙ୍କ ଅନୁଭୂତ ବେଦ ବା ଜ୍ଞାନର ସଂଖ୍ୟା ଏତେ ବେଶୀ ଯେ, ତାହା କଳନା କରିବା କଷ୍ଟକର । ଆକୁମାରୀ ହିମାଚଳ ସମଗ୍ର ଭାରତ-ଖଣ୍ଡରେ ସେଗୁଡ଼ିକ ନାନା ଆକାରରେ ବିକ୍ଷିପ୍ତ ହୋଇ ରହିଛି । ସେ ଅକ୍ଳାନ୍ତ ପରିଶ୍ରମ କରି ସେହି ଜ୍ଞାନ ବା ବେଦଗୁଡ଼ିକୁ ସଂଗ୍ରହ କଲେ ଏବଂ ତାହାକୁ ଚାରି ଭାଗରେ ସଜାଇଲେ—ଋକ୍, ସାମ, ଯଜୁଃ, ଅଥର୍ବ । 'ବ୍ୟାସ' ଶବ୍ଦର ଅର୍ଥ ବିଭାଗ । କୃଷ୍ଣ-ଦ୍ୱୈପାୟନ ଇତସ୍ତତଃ ବିକ୍ଷିପ୍ତ 'ବେଦ'ଗୁଡ଼ିକୁ ଏକତ୍ର କରି ଚାରୋଟି 'ବ୍ୟାସ' ବା ବିଭାଗରେ ସୁଶୃଙ୍ଖଳରୂପେ ସଜାଇଲେ ବୋଲି ସେହିଦିନୁଁ 'ବେଦବ୍ୟାସ' ନାମରେ ଆଖ୍ୟାତ ହେଲେ ।

ଆର୍ଯ୍ୟଋଷିମାନଙ୍କ ଲବ୍ଧ ପ୍ରତ୍ୟେକ ଜ୍ଞାନର ନାମ ଥିଲା ବେଦ ଏବଂ ବେଦବ୍ୟାସଙ୍କ ସଂକଳନର ନାମ ମଧ୍ୟ ହେଲା 'ବେଦ' । ବେଦବ୍ୟାସ ନିଜର ଚାରିଜଣ ଶିଷ୍ୟଙ୍କୁ ଚାରି ବେଦ ଶିକ୍ଷା ଦେଲେ—ପୈଲ ଶିଖିଲେ ଋକ୍‌ବେଦ, ଜୈମିନି ଶିଖିଲେ ସାମବେଦ, ବୈଶମ୍ପାୟନ ଯଜୁଃବେଦ ଓ ସୁମନ୍ତ ଅଥର୍ବବେଦ । ସେମାନେ ପୁଣି

ସେ ନିଜେ ଶିକ୍ଷା ପାଇଥିବା ବେଦକୁ ନିଜ ନିଜର ଶିଷ୍ୟମଣ୍ଡଳୀଙ୍କୁ ଶିଖାଇଲେ ।

ଏହି ପ୍ରତ୍ୟେକ ବେଦର ମୁଖ୍ୟ ଦୁଇଟି ଲେଖାଏଁ ଭାଗ ଅଛି—ପ୍ରଥମ ଭାଗର ନାମ 'ମନ୍ତ୍ର' ବା ସଂହିତା ଏବଂ ଦ୍ୱିତୀୟ ଭାଗର ନାମ 'ବ୍ରାହ୍ମଣ' । ମନ୍ତ୍ର ବା ସଂହିତା ଭାଗରେ ନାନା ପ୍ରକାର ଯାଗଯଜ୍ଞ ଓ ଆଚରଣୀୟମର କଥା ବର୍ଣ୍ଣିତ ଅଛି । ବ୍ରାହ୍ମଣ ଭାଗରେ ନାନା ତତ୍ତ୍ୱକଥା, ପରମେଶ୍ୱରଙ୍କ ସ୍ତବ ଏବଂ ସଂହିତା ବା ମନ୍ତ୍ରର ବ୍ୟାଖ୍ୟା ସ୍ଥାନ ପାଇଛି । ମୋଟ ଉପରେ ଦେଖିବାକୁ ଗଲେ ପୃଥିବୀରେ ଆଜି-ପର୍ଯ୍ୟନ୍ତ ଯେଉଁସବୁ ଧର୍ମ ପ୍ରଚଳିତ ହୋଇଛି, ତହିଁରେ ଶ୍ରେଷ୍ଠବୋଲି ଯେତେ ସତ୍ୟ ବା ଜ୍ଞାନ ଅଛି, ସେ ସବୁଗୁଡ଼ିକ ସେହି ଆଦି ଯୁଗରୁ ଆର୍ଯ୍ୟଋଷିମାନେ ବେଦରେ ରଖିଯାଇଛନ୍ତି ।

'ବେଦ' ସଙ୍ଗେ ସଙ୍ଗେ ତାର ପରିପୂରକ ଗ୍ରନ୍ଥରୂପେ 'ଉପନିଷଦ'ର ସୃଷ୍ଟି । ଏହାର ସଂଖ୍ୟା ଅନେକ । ବିଭିନ୍ନ ମହାପୁରୁଷ ବିଭିନ୍ନ ଉପନିଷଦ ରଚନା କରିଥିଲେ । ଉପନିଷଦର ଅର୍ଥ ହେଉଛି—ମନୁଷ୍ୟ ଯେଉଁ ବିଦ୍ୟାବଳରେ ଭଗବାନଙ୍କ ସାନ୍ନିଧ ଲାଭ କରିପାରେ ଏବଂ ପରାଧୀନତାର ବନ୍ଧନରୁ ମୁକ୍ତି ପାଇ ଅଖଣ୍ଡ ସ୍ୱାଧୀନତାର ଅଧିକାରୀ ହୋଇପାରେ । ପ୍ରକୃତରେ ଉପନିଷଦ ହେଉଛି ବେଦର ସାର ବା ନିର୍ଯ୍ୟାସ । ଏଥିପାଇଁ ଏହାର ଅନ୍ୟ ନାମ 'ବେଦାନ୍ତ' ।

ମୋଗଲ ବାଦଶାହ ସାହାଜାହାନଙ୍କ ପୁତ୍ର ଦାରା ପ୍ରଥମେ ଉପନିଷଦକୁ ପାର୍ସିଭାଷାରେ ଅନୁବାଦ କରିଥିଲେ । ଜର୍ମାନୀ ଦେଶର ପ୍ରସିଦ୍ଧ ମନୀଷୀ ସୋପେନ୍ ହାଓଆର୍ ସେହି ଅନୁବାଦ ପାଠ କରି ଆର୍ଯ୍ୟମାନଙ୍କ ଚୂଡ଼ାନ୍ତ ଜ୍ଞାନର ଭୂୟସୀ ପ୍ରଶଂସା କରିଥିଲେ । ଆଦି

ଯୁଗର ସେହି ଋଷିମାନେହିଁ ଯେ ବିଶ୍ୱର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ଜ୍ଞାନଗୁରୁ, ଏଥିରେ ତାଙ୍କର ତିଳେମାତ୍ର ସନ୍ଦେହ ରହିଲା ନାହିଁ ।

ଏ ଯୁଗରେ କେତେକ ପ୍ରଧାନ ବୈଦେଶିକ ଭାଷାରେ ବେଦ ଓ ଉପନିଷଦର ଅନୁବାଦ ଆତ୍ମପ୍ରକାଶ କରିଅଛି । ଆଧୁନିକ ଜଗତ ତାହାର ମାଧ୍ୟମରେ ଆର୍ଯ୍ୟଋଷିମାନଙ୍କ ଆଧ୍ୟାତ୍ମିକ ପ୍ରତିଭାର ପରିଚୟ ପାଇବାକୁ ସମର୍ଥ ହୋଇପାରିଛି ।

ଉପନିଷଦ ଓ ବେଦର ବହୁ ସାରଗର୍ଭକ ଗଳ୍ପ ସନ୍ନିବେଶିତ ହୋଇଛି । ସେଗୁଡ଼ିକ ଯେପରି ଚିତ୍ତାକର୍ଷକ, ସେହିପରି ଜ୍ଞାନଗର୍ଭକ । ଏହିସବୁ ଗଳ୍ପ ସାହାଯ୍ୟରେ ସେଯୁଗର ଋଷିଗଣ ସେମାନଙ୍କ ଶିଷ୍ୟମଣ୍ଡଳୀଙ୍କୁ କଠିନ କଠିନ ଜ୍ଞାନର କଥା ବୁଝାଉଥିଲେ ।

———

# ଅଦୃଶ୍ୟ ବିଶ୍ୱନିର୍ମାତା

## ( ଉପନିଷଦ ଗଳ୍ପ )

— ୧ —

ବିଶ୍ୱ ଅତି ବିଶାଳ, ବିଚିତ୍ର......

ଏହି ବିଶାଳ ବିଶ୍ୱର ନିର୍ମାତା କିଏ, ଏହା ଜାଣିବାକୁ ଆଦି ଯୁଗର ଋଷିମାନେ ବହୁକାଳ ଚିନ୍ତା କଲା ପରେ ଧ୍ୟାନବଳରେ ଯେଉଁ ମହାଜ୍ୟୋତିର୍ମୟ ବିରାଟପୁରୁଷଙ୍କୁ ମନମଧ୍ୟରେ ଦର୍ଶନ କରିପାରିଥିଲେ, ତାହାଙ୍କ ସୃଷ୍ଟିର ରଚୟିତା, ବିଶ୍ୱର ଦେବତା ବୋଲି ସ୍ଥିର କଲେ । ତାଙ୍କର ଆଦି ନାହିଁ କି ନାହିଁ, ଅଥଚ ସେ ସବୁ ସ୍ଥାନରେ ବିଦ୍ୟମାନ— ତାଙ୍କର କୌଣସି ଆକାର ନାହିଁ, ଅଥଚ ସେ ଦେଖାଯାଇ ପାରନ୍ତି । ଋଷିମାନେ ସେହି ବିଶ୍ୱକାରିଗର ବିରାଟପୁରୁଷଙ୍କର ନାମ ଦେଇଥିଲେ 'ବ୍ରହ୍ମ' ।

ଏହି ବିଶ୍ୱନିର୍ମାତା ବ୍ରହ୍ମ କିଏ, ଏ ବିଷୟରେ ଥରେ ପାଞ୍ଚଜଣ ଋଷିପୁତ୍ରଙ୍କ ମଧ୍ୟରେ ତର୍କ ପଡ଼ିଲା । ସେମାନଙ୍କର ନାମ--ସତ୍ୟଯଜ୍ଞ, ଜନ, ବୁଡ଼ିଲ, ଇନ୍ଦ୍ରଦ୍ୟୁମ୍ନ ଓ ପ୍ରାଚୀନଶାଳ । ସେମାନେ ଅତ୍ୟନ୍ତ ବିଦ୍ୱାନ୍ ଥିବାରୁ ଆପଣା ଆପଣା ଭିତରେ ନାନାଭାବରେ ବିଚାର ଓ ଆଲୋଚନା କଲେ, ମାତ୍ର କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ଶେଷରେ ଜନ କହିଲା :

"ଆମଦ୍ୱାରା ଏ କଠିନ ବିଷୟର ମୀମାଂସା ହୋଇପାରିବ ନାହିଁ । ଚାଲ, ଉଦ୍ଦାଳକ ଋଷିଙ୍କ ପାଖକୁ ଯିବା । ଅନେକ ଲୋକଙ୍କ

ମୁହଁରୁ ଶୁଣିଛୁ, ସେ ବ୍ରହ୍ମଙ୍କ ଉପାସନା କରନ୍ତି । ତାଙ୍କୁ ପଚ୍ଚରିଲେ ସେ ନିଶ୍ଚୟ ଆମର ସନ୍ଦେହଭଞ୍ଜନ କରିପାରିବେ । ଆମର ଏଠାରେ ଏତେ ଆଲୋଚନା କରି କିଛି ଲାଭ ନାହିଁ ।”

ପ୍ରସ୍ତାବଟି ଅନ୍ୟ ଚାରିଜଣ ବନ୍ଧୁଙ୍କ ମନକୁ ବେଶ୍ ପାଇଲା । ତହୁଁ ସମସ୍ତେ ମିଳି ଉଦ୍ଦାଳକ ଋଷିଙ୍କ ଆଶ୍ରମକୁ ଗମନ କଲେ । ପଥରେ ଗଲାବେଳେ ସେମାନେ ଅରଣ୍ୟରୁ ଏକ ଗୁଚ୍ଛ ଲେଖାଏଁ ଯଜ୍ଞକାଷ୍ଠ ସଂଗ୍ରହ କରି ତାହାକୁ ହସ୍ତରେ ଧରି ଚାଲିଲେ ।

ଋଷି ବା ଗୁରୁଙ୍କ ପାଖକୁ ଯିବାକୁ ହେଲେ ସଙ୍ଗରେ ଏପରି କାଷ୍ଠଗୁଚ୍ଛ ନେବା ସେକାଳରେ ଏକ ବିଧିବଦ୍ଧ ପ୍ରଥା ଥିଲା । ଏଭଳି ପ୍ରଥା ନିରର୍ଥକ ନୁହେଁ—ଏହାର ଏକ ଅର୍ଥ ଅଛି । ଗୁରୁଙ୍କୁ ସେବା କରିବାର ମନୋଭାବ ପ୍ରବଳ ନ ଥିଲେ ବିଦ୍ୟାଲାଭ ହୁଏ ନାହିଁ ଏହା ସେଯୁଗରେ ପ୍ରତ୍ୟେକ ଶିଷ୍ୟର ବିଶ୍ୱାସ ଥିଲା । ଋଷିମାନଙ୍କ ଆଶ୍ରମରେ ଅହୋରାତ୍ର ଯଜ୍ଞକୁଣ୍ଡରେ ଅଗ୍ନି ଜଳୁଥାଏ । ସେଥିପାଇଁ ପ୍ରଚୁର କାଷ୍ଠ ଆବଶ୍ୟକ ହୁଏ । ଶିଷ୍ୟମାନେ ଯେଉଁ ଯଜ୍ଞକାଷ୍ଠ ନିଅନ୍ତି, ତାହା ସେ ଅଗ୍ନିପ୍ରଜ୍ୱାଳନରେ ବ୍ୟବହୃତ ହୋଇଥାଏ । ଶିକ୍ଷାର୍ଥୀମାନଙ୍କର ଏହି କାର୍ଯ୍ୟ ଗୁରୁଙ୍କୁ ସେବା କରିବାର ଏକ ନିଦର୍ଶନ ବ୍ୟତୀତ ଆଉ କିଛି ନୁହେଁ । ଆଶ୍ରମର ଶିଷ୍ୟଗଣ ମଧ୍ୟ ପ୍ରତ୍ୟହ ବନମଧ୍ୟରୁ ଏହି ଯଜ୍ଞକାଷ୍ଠ ଆହରଣ କରୁଥିଲେ ।

ପଞ୍ଚ ଋଷିକୁମାର ଏହି ଚିରାଚରିତ ପବିତ୍ର ବିଧି ଅନୁଯାୟୀ ଯଜ୍ଞକାଷ୍ଠହସ୍ତରେ ଉଦ୍ଦାଳକ ଋଷିଙ୍କର ସମୀପବର୍ତ୍ତୀ ହେଲେ । ଜ୍ଞାନପିପାସୁ ଋଷିପୁତ୍ରମାନଙ୍କୁ ଏପରିଭାବରେ ଆସିବାର ଦେଖି ସର୍ବଜ୍ଞ ଉଦ୍ଦାଳକ ସେମାନଙ୍କ ମନୋଗତ କଥା ବେଶ୍ ଜାଣି-ପାରିଲେ । ସେ ସେମାନଙ୍କୁ ଆଶୀର୍ବାଦ କରି କହିଲେ :

'ହେ ଋଷିପୁତ୍ରବୃନ୍ଦ ! ତୁମ୍ଭେମାନେ ଯେଉଁ କାରଣରୁ ମୋ ନିକଟକୁ ଆସିଅଛ, ମୁଁ ତାହା ହୃଦୟଙ୍ଗମ କରିପାରିଛି । ମାତ୍ର ଦୁଃଖର କଥା, ବହୁ ଚେଷ୍ଟାସତ୍ତ୍ୱେ ମୁଁ ଆଜପର୍ଯ୍ୟନ୍ତ ବ୍ରହ୍ମଙ୍କୁ ଠିକ୍‌ରୂପେ ଜାଣିପାରି ନାହିଁ । ଏପରି ସ୍ଥଳେ ତୁମ୍ଭମାନଙ୍କୁ ତାଙ୍କ ବିଷୟରେ କି ଶିକ୍ଷା ଦେବି ? ଅତି ସରଳଭାବରେ ମୁଁ ସ୍ୱୀକାର କରୁଛି, ତୁମ୍ଭମାନଙ୍କୁ ଶିକ୍ଷା ଦେବାର ଶକ୍ତିସାମର୍ଥ୍ୟ ମୋର ନାହିଁ । 'କେକୟ' ଦେଶର ରାଜା ଅଶ୍ୱପତି ହିଁ ପ୍ରକୃତ ବ୍ରହ୍ମଜ୍ଞାନୀ । ବିଶ୍ୱଦେବତାଙ୍କ ସେ ପୂର୍ଣ୍ଣରୂପେ ଉପଲବ୍‌ଧି କରିପାରିଛନ୍ତି । ତୁମ୍ଭମାନଙ୍କର ଯଦି ଏତେ ଆଗ୍ରହ, ତାହାହେଲେ ଚାଲ, ମୁଁ ତୁମ୍ଭମାନଙ୍କୁ ତାଙ୍କ ନିକଟକୁ ନେଇଯିବି । ସେ ଇଚ୍ଛା କଲେ ବ୍ରହ୍ମଙ୍କ ବିଷୟ ଅତି ପ୍ରାଞ୍ଜଳଭାବରେ ବୁଝାଇଦେଇ ତୁମ୍ଭମାନଙ୍କ ମନର ପିପାସା ମେଣ୍ଟାଇଦେବେ ।"

ଋଷିକୁମାରମାନେ ଏହା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ସେଦିନଟି ଋଷିଙ୍କ ଆଶ୍ରମରେ ଅବସ୍ଥାନ କରି ଗୁରୁସେବାରେ ନିଜ ନିଜକୁ ନିୟୋଜିତ କଲେ । ପରଦିନ ପ୍ରତ୍ୟୁଷରେ ଉଦ୍ଦାଳକ ସେହି ପଞ୍ଚ ଋଷି ପୁତ୍ରଙ୍କୁ ସଙ୍ଗରେ ନେଇ ରାଜର୍ଷି ଅଶ୍ୱପତିଙ୍କ ନିକଟକୁ ଯାତ୍ରା କଲେ ।

— ୨ —

ସୁସଜ୍ଜିତ ପ୍ରକାଣ୍ଡ ଯଜ୍ଞମଣ୍ଡପ......

ଚାରି ଦିଗରେ ସୁବର୍ଣ୍ଣ ତୋରଣ । ଉପରେ ରଙ୍ଗବେରଙ୍ଗ ନାନାପ୍ରକାର ଚନ୍ଦ୍ରାତପ । ତଳେ କ୍ଷୁଦ୍ରବୃହତ୍ କେତେ ବେଦୀ । ବିଭିନ୍ନ ପାର୍ଶ୍ୱରେ ଋଷି, ରାଜା, ଦର୍ଶକ ପ୍ରଭୃତିଙ୍କ ପାଇଁ ସ୍ୱତନ୍ତ୍ର-ଭାବରେ ଆସନ ନିର୍ଦ୍ଧାରିତ । ଏସମସ୍ତର ମଧ୍ୟଭାଗରେ ଯଜ୍ଞକୁଣ୍ଡ ।

ଉତ୍ସବର ଆଡ଼ମ୍ବରରେ ସ୍ଥାନଟି ଅତି ରମଣୀୟ ଦେଖାଯାଉଥାଏ । ବିବିଧ ସୁରମ୍ୟ ପୁଷ୍ପମାଳା ଓ ଯଜ୍ଞଦ୍ରବ୍ୟର ସୌରଭରେ ଚତୁର୍ଦ୍ଦିଗ ଆମୋଦମୟ ହୋଇ ଉଠିଥାଏ ।

ରାଜର୍ଷି ଅଶ୍ୱପତି ଏହି ବିରାଟ ଯଜ୍ଞଟିର ଆୟୋଜନ କରିଥାନ୍ତି । ସେକାଳରେ ଏହିପ୍ରକାର ଯଜ୍ଞାନୁଷ୍ଠାନ ଈଶ୍ୱରଙ୍କ ଉପାସନାଦ୍ୱାରା ତୃପ୍ତ କରିବାର ଏକ ପନ୍ଥା ଥିଲା । ଲୋକେ ସ୍ୱହସ୍ତରେ ଯଜ୍ଞବେଦୀ ପ୍ରସ୍ତୁତ କରୁଥିଲେ । ତାହାଉପରେ ନାନା ରଙ୍ଗର, ନାନା ଢଙ୍ଗର ଝୋଟି ଏବଂ କୋଟିକମର ଚିତ୍ର ଅଙ୍କିତ ହୋଇ ସୂକ୍ଷ୍ମତମ ହସ୍ତଶିଳ୍ପର ଜୀବନ୍ତ ପ୍ରମାଣ ଦେଉଥିଲା । ସେ ସମୟକୁ ଜ୍ୟାମିତିର ଉଦ୍ଭାବନ ହୋଇ ନ ଥିଲା ସତ, ମାତ୍ର ଶିଳ୍ପୀମାନଙ୍କ ଚିତ୍ରରଚନାପାଟବରୁ ପ୍ରତୀତ ହୁଏ ଯେ, କଠିନ କଠିନ ଜ୍ୟାମିତିକ ଚିତ୍ର ଅଙ୍କନର ନିୟମ ସେମାନଙ୍କୁ ଉତ୍ତମରୂପେ ଜଣା ଥିଲା ।

ଅଗ୍ନିଙ୍କୁ ତତ୍କାଳୀନ ଲୋକେ ଅତି ପବିତ୍ର ମନେ କରୁଥିଲେ । ଯେତେ ପୂଜାଦ୍ରବ୍ୟ, ସମସ୍ତ ସେହି ଅଗ୍ନିଙ୍କୁ ସମର୍ପିତ ହେଉଥିଲା । ଲୋକମାନଙ୍କର ବିଶ୍ୱାସ ଥିଲା, ଅଗ୍ନି ସେସବୁ ଦ୍ରବ୍ୟ ନେଇ ପରମେଶ୍ୱରଙ୍କ ନିକଟରେ ପହଞ୍ଚାଇ ଦେଉଥିଲେ ।

ଯେଉଁ ପୁରୋହିତମାନେ ଯଜ୍ଞକାର୍ଯ୍ୟ କରୁଥିଲେ, ସେମାନଙ୍କୁ 'ହୋତା' କୁହାଯାଉଥିଲା । ଯଜ୍ଞବେଦୀର ଚାରିଧାରରେ ବସି ହୋତାମାନେ ଉଚ୍ଚସ୍ୱରରେ ଅନର୍ଗଳ ଭାବରେ ମନ୍ତ୍ର ପଢ଼ୁଥିଲେ ଏବଂ ଘୃତ, ଯବ, ପାୟସ, ପିଷ୍ଟକ ଆଦି ବହୁବିଧ ପୂଜାସାମଗ୍ରୀ ସେହି ଅଗ୍ନିଗର୍ଭରେ ନିକ୍ଷେପ କରୁଥିଲେ । ସେମାନଙ୍କ ପାର୍ଶ୍ୱରେ ବସି ବ୍ରାହ୍ମଣଗଣ ବେଦଗାନ କରନ୍ତି । ଯଜ୍ଞମଣ୍ଡପର ଅନ୍ୟ ଏକ ପାର୍ଶ୍ୱରେ ଋଷିମାନଙ୍କର ସଭା ବସେ । ସେଠାରେ ବେଦ, ଉପନିଷଦ



ଅଶ୍ୱପତିଙ୍କ ଯଜ୍ଞଭୂମିରେ ପଞ୍ଚ ଋଷି ପୁତ୍ର

ଆତ୍ମର ଆଲୋଚନା ଓ ତର୍କବିତର୍କ ଶୁଣିଲେ । ଆମନ୍ତ୍ରିତ ଯେତେ ରାଜା ମହାରାଜା, ରାଜ୍ୟର ଯେତେ ଗୁଣୀ ବିଦ୍ୱାନ୍ ପଣ୍ଡିତ ବ୍ୟକ୍ତି ସମସ୍ତେ ତାହା ଖୁବ୍ ମନୋଯୋଗସହକାରେ ଶୁଣୁଥାନ୍ତି । ଏଣେ ଚକ୍ରବର୍ତ୍ତୀ ରାଜା ଅଗଣିତ ଧନରତ୍ନ, ସଂଖ୍ୟାତୀତ ଗାଈ ନିଜ ହସ୍ତରେ ଦାନ କରନ୍ତି । ପୁଣି ଦୀନଦୁଃଖୀ, ଅତିଥି ଭିକ୍ଷୁକଙ୍କ ପାଇଁ ଅହର୍ନିଶ ଖାଦ୍ୟଭଣ୍ଡାର ମୁକ୍ତ ରହିଥାଏ ।

ଅଶ୍ୱପତିଙ୍କ ଯଜ୍ଞଶାଳାରେ ଠିକ ଏହି ନିୟମରେ ସମସ୍ତ ବ୍ୟବସ୍ଥା ହୋଇଥିଲା । ଯଥାସମୟରେ ଉଦ୍ଦାଳକ ଋଷି ପଞ୍ଚ ଋଷିକୁମାରଙ୍କ ଗହଣରେ ସେଠାରେ ଉପଗତ ହେଲେ । ସେମାନଙ୍କୁ ଦେଖି ରାଜର୍ଷି ସମାଦରରେ ଅଭ୍ୟର୍ଥନା କରିନେଲେ ଏବଂ ଯଥୋଚିତ ସତ୍କାରପରେ ବିନମ୍ର ସ୍ୱରରେ କହିଲେ :

"ମୁଁ ଏହି ଯଜ୍ଞଟି ଆରମ୍ଭ କରିଅଛି । ଏପରି ସମୟରେ ଯେ ଆପଣମାନେ ଆସିଛନ୍ତି, ଏହା ମୋର ପରମ ସୌଭାଗ୍ୟ । ମୋର ଏହି ଯଜ୍ଞଟି ଶେଷ ହେବାପର୍ଯ୍ୟନ୍ତ ଆପଣମାନେ ଦୟା କରି ଏଠାରେ ଅବସ୍ଥାନ କରନ୍ତୁ । ଯଜ୍ଞ ଉଦ୍‌ଯାପିତ ହେବାବେଳେ ମୁଁ ପ୍ରତ୍ୟେକ ହୋତାଙ୍କୁ ଯେତିକ ଧନରତ୍ନ ଦେବି, ଆପଣମାନଙ୍କ ପ୍ରତ୍ୟେକଙ୍କୁ ମଧ୍ୟ ସେହି ପରିମାଣର ଧନରତ୍ନ ଦେଇ ସନ୍ତୁଷ୍ଟ କରିବି ।"

ଏହା ଶୁଣି ଋଷିପୁତ୍ରମାନେ ଉତ୍ତର ଦେଲେ :

"ମହାରାଜ ! କୌଣସି ଧନସମ୍ପଦ ଲାଳସାରେ ଆମ୍ଭେମାନେ ଆସି ନାହୁଁ—ଆସିଛୁଁ ବିଶ୍ୱଦେବତା ବ୍ରହ୍ମଙ୍କ ବିଷୟ ଆପଣଙ୍କ ନିକଟରୁ ଜାଣିବାକୁ । କୃପା କରି ସେହି ଅମୂଲ୍ୟଶିକ୍ଷା-ସମ୍ପଦ ଦେଇ ଆମ୍ଭମାନଙ୍କ ଆଶା ଚରିତାର୍ଥ କରନ୍ତୁ ।

ନିର୍ଲୋଭ ଋଷିକୁମାରମାନଙ୍କର ସାତ୍ତ୍ୱିକ ମନୋବୃତ୍ତି ଦେଖି ଅଶ୍ୱପତି ଅତି ପ୍ରୀତ ହେଲେ । ସେମାନେ ବିଶ୍ୱସ୍ରଷ୍ଟାଙ୍କ ବିଷୟରେ

ଜ୍ଞାନ ଅର୍ଜନ କରିବାକୁ ସେ ଯଥାର୍ଥରେ ଉପଯୁକ୍ତ, ଏହା ତାଙ୍କର ବିଶ୍ବାସ ହେଲା । ତେଣୁ ସେ କହିଲେ :

"ଖୁବ୍ ଆନନ୍ଦର କଥା । ଆପଣମାନେ ତାହାହେଲେ ଅପେକ୍ଷା କରନ୍ତୁ । ଯଜ୍ଞକାର୍ଯ୍ୟର ଦାୟିତ୍ବରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ମୁଁ ଆପଣମାନଙ୍କୁ ଶକ୍ତିମତେ ବ୍ରହ୍ମ ବିଷୟରେ ଶିକ୍ଷା ଦେବି ।"

— ୩ —

ମହାସମାରୋହରେ ଯଜ୍ଞ ସମାପିତ ହେଲା·····

ତତ୍ପର ଦିବସ ସତ୍ୟଯଜ୍ଞ, ଜନ, ବୁଡ଼ିଲ, ଇନ୍ଦ୍ରଦ୍ୟୁମ୍ନ ଓ ପ୍ରାଚୀନଶାଳ ପ୍ରତ୍ୟେକେ ଯଜ୍ଞକାଷ୍ଠ ହସ୍ତରେ ଘେନି ଅଶ୍ବପତିଙ୍କ ନିକଟରେ ଉପସ୍ଥିତ ହେଲେ । ରାଜର୍ଷି ସେମାନଙ୍କୁ ବସିବାକୁ ଆସନ ଦେଇସାରି ପଚାରିଲେ :

"ଆପଣମାନେ କଏ କ ଭାବରେ ବିଶ୍ବଦେବତା ବ୍ରହ୍ମଙ୍କୁ ଉପାସନା କରନ୍ତି, ଜଣ ଜଣ ହୋଇ କହନ୍ତୁ ।"

ସର୍ବପ୍ରଥମେ ପ୍ରାଚୀନଶାଳ କହିଲେ .

"ମୁଁ ସ୍ବର୍ଗକୁ ବ୍ରହ୍ମ ବୋଲି ଉପାସନା କରେ ।"

ଜନ କହିଲେ :

"ମୁଁ ବାୟୁକୁ ବ୍ରହ୍ମରୂପରେ ଭଜନ କରେ ।"

ଇନ୍ଦ୍ରଦ୍ୟୁମ୍ନ—"ମୁଁ ଆକାଶକୁ ।"

ବୁଡ଼ିଲ—"ମୁଁ ଜଳକୁ ।"

ସତ୍ୟଯଜ୍ଞ—"ମୁଁ ସୂର୍ଯ୍ୟଙ୍କୁ ।"

ରାଜର୍ଷି ସର୍ବଶେଷରେ ଉଦ୍ଦାଳକଙ୍କୁ ପଚାରିବାରୁ ସେ କହିଲେ :

"ଏହି ପୃଥିବୀ ମଧ୍ୟରେ ହିଁ ମୁଁ ବ୍ରହ୍ମଙ୍କୁ ଉପାସନା କରେ ।"

ଅଶ୍ୱପତି ସବୁରି କଥା ଶୁଣିସାରିଲା ପରେ ଧୀର ସ୍ୱରରେ ବୁଝାଇଲେ :

"ଆପଣମାନେ ଯେଉଁଭଳି ଭାବରେ ଉପାସନା କରୁଛନ୍ତି, ତାହା ଭୁଲ୍ ବୋଲି ମୁଁ କହିପାରିବ ନାହିଁ । ପ୍ରକୃତରେ ବ୍ରହ୍ମଙ୍କର ଆକାର ନାହିଁ । ତେଣୁ ତାଙ୍କ ବିଷୟରେ କଳ୍ପନା କରିବା ବଡ଼ ଦୂରୂହ । ବିଶ୍ୱସ୍ରଷ୍ଟା ସେହି ବିରାଟପୁରୁଷଙ୍କର ବିରାଟତ୍ୱ କଥା ଚିନ୍ତା କରିବାକୁ ଗଲେ ଅନନ୍ତ ଆକାଶ ବା ସାଗରର ଛବି ସ୍ୱତଃ ସମ୍ମୁଖରେ ନାଚିଉଠେ । ତାଙ୍କର ସର୍ବବ୍ୟାପକତା ବିଷୟ ଭାବିଲେ ଜଗତ୍‌ବ୍ୟାପୀ ବାୟୁମାନଙ୍କୁ ଆସିବା ସ୍ୱାଭାବିକ । ସେହି ଜ୍ୟୋତିର୍ମୟଙ୍କ କଥା ଧ୍ୟାନ କରିବସିଲେ ତେଜସ୍ୱର ସୂର୍ଯ୍ୟମୂର୍ତ୍ତି ମନ-ଗଗନରେ ହଠାତ୍ ପ୍ରକାଶିତ ହୁଏ । ତାଙ୍କର ପରମରମଣୀୟ ରୂପକୁ ଚକ୍ଷୁ ମୁଦି ଭାବିଲେ ବିଚିତ୍ର ଧରଣୀ ବା ସୁନ୍ଦର ସ୍ୱର୍ଗରାଜ୍ୟର ଚିତ୍ର ହୃଦୟରେ ଅଙ୍କିତ ହୋଇଯାଏ । ତେଣୁ ବ୍ରହ୍ମଙ୍କୁ ଧାରଣା କରିବା-ପାଇଁ ଆପଣମାନେ ଯେଉଁ ଯେଉଁ ପଥ ଅବଲମ୍ବନ କରିଛନ୍ତି, ତାହା ସାଧନାର ପ୍ରଥମ ସୋପାନ । ମାତ୍ର ସାଗର, ଆକାଶ, ପବନ, ସୂର୍ଯ୍ୟ, ପୃଥିବୀ, ସ୍ୱର୍ଗ, ଏ କେହି ବ୍ରହ୍ମ ନୁହନ୍ତି; ଅଥଚ ଏହି ସମସ୍ତର ମଧ୍ୟରେ ହିଁ ସେ ବିଦ୍ୟମାନ । ପ୍ରକୃତରେ ଏହି ବିରାଟ ପ୍ରକୃତି ସେହି ଅଦୃଶ୍ୟ ବିରାଟପୁରୁଷଙ୍କର ଗୋଟିଏ ଦୃଶ୍ୟମାନ ଚିତ୍ରପଟ ।"

ଏତେ ସହଜ ସରଳ ଭାଷାରେ ଓ ନିର୍ମଳ ସୁନ୍ଦରଭାବରେ ରାଜର୍ଷି ଅଶ୍ୱପତି ବୁଝାଇଦେଲେ ଯେ, କି ଋଷି କି ଋଷିପୁତ୍ରଗଣ ସମସ୍ତେ ବ୍ରହ୍ମଙ୍କ ବିଷୟରେ ଏକ ସୁସ୍ପଷ୍ଟ ଧାରଣା କରି ପାରିଲେ । ଏତେ ଦିନେ ସେମାନଙ୍କ ମନର ପ୍ରଶ୍ନ ସମାହିତ ହେଲା । ପ୍ରଫୁଲ୍ଲ ଚିତ୍ତରେ ସେମାନେ ଅଶ୍ୱପତିଙ୍କୁ କୃତଜ୍ଞତା ଜଣାଇ ନିଜ ନିଜ ବାସସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ ।

---

# ଜିଜ୍ଞାସୁ ଋଷିବାଳକ

## ( ଉପନିଷଦ ଗଳ୍ପ )

—୧—

ନୀଳ ପାରାବାରର ଶ୍ୟାମଳ ତଟଭୂମି·····

ଅମନ୍ଦା ନର୍ମଦା ତଟିନୀ ଶୁକ୍ଳବସନା ସୁନ୍ଦରୀଟି ପରି କଳକଳ ନାଦରେ ମାତାଲୀପରି ଧାଇଁ ଏଇଠାରେ ତାର ପ୍ରିୟତମ ରତ୍ନାକର କୋଳରେ ନିଜକୁ ଢାଳି ଦେଇଛି । ଏହି ପବିତ୍ର ସାଗରସଙ୍ଗମ ସ୍ଥଳୀରେ ବିଶାଳ 'ଭୃଗୁକଚ୍ଛ' ଆଶ୍ରମ ପ୍ରତିଷ୍ଠିତ । ଘନଦ୍ରୁମାଚ୍ଛନ୍ନ ସୁଶୋଭନ ସ୍ନିଗ୍ଧ ତପୋବନ ପୀଠରେ ଆଜ ମହୋତ୍ସବର ଲୀଳା । ଚତୁର୍ଦ୍ଦିଗରେ ଆନନ୍ଦର କଳ କୋଳାହଳ ।

ମହର୍ଷି ଭୃଗୁ ଏହି ଆଶ୍ରମର କୁଳପତି । ତାଙ୍କ ଧର୍ମପତ୍ନୀଙ୍କ ନାମ 'ପୁଲୋମା' । ଗର୍ଭବତୀ ପୁଲୋମା 'ପୁଂସବନ' ବ୍ରତ ଆରମ୍ଭ କରିଥିବାରୁ ସେହି ଉଦ୍ଦେଶ୍ୟରେ ଏତେ ଉତ୍ସବ, ଏତେ ହର୍ଷରୋଳ ।

ଭୃଗୁଙ୍କର ଜନ୍ମବୃତ୍ତାନ୍ତ ଅତି ବିଚିତ୍ର । ଥରେ ବରୁଣ ଦେବ ଏକ ଯଜ୍ଞ କରୁଥିଲେ । ପିତାମହ ବ୍ରହ୍ମା ସେହି ଯଜ୍ଞର ଅଗ୍ନିରୁ ଏକ କୁମାର ଉତ୍ପାଦନ କଲେ । ସେହି କୁମାରଟିର ନାମ ହେଲା ଭୃଗୁ । ଭୃଗୁ କ୍ରମେ ସାଧନା ବଳରେ ମହର୍ଷିରେ ପରିଣତ ହେଲେ । ଏହି ଭୃଗୁଙ୍କଠାରୁ ଭୃଗୁବଂଶର ଉତ୍ପତ୍ତି ଏବଂ ଭୃଗୁ ଅଗ୍ନିଗର୍ଭରୁ ଜାତ ହୋଇଥିଲେ ବୋଲି ସେହି ଦିନଠାରୁ ଅଗ୍ନିଦେବଙ୍କ ସହିତ ଭୃଗୁବଂଶର ଅଚ୍ଛେଦ୍ୟ ସମ୍ବନ୍ଧ ସ୍ଥାପିତ ହେଲା ।

ପୁଲୋମା ଦେବୀଙ୍କର ବ୍ରତ ଯଥାକାଳରେ ଉଦଯାପିତ ହେଲା । ଏହି ସମୟରେ ମହର୍ଷି ଭୃଗୁଙ୍କୁ କୌଣସି ରାଜାଙ୍କର ଅଭିଷେକୋତ୍ସବରେ ଯୋଗ ଦେବାପାଇଁ ଆମନ୍ତ୍ରଣ ଆସିଲା । ତହୁଁ ଭୃଗୁ ନିଜ ପତ୍ନୀଙ୍କୁ ଅଗ୍ନିଦେବଙ୍କ ତତ୍ତ୍ୱାବଧାନରେ ଛାଡ଼ିଦେଇ ଅଭିଷେକ ଉଦ୍ଦେଶ୍ୟରେ ଆଶ୍ରମ ତ୍ୟାଗ କଲେ ।

କିଛି ଦିନ ଗଲା । ଥରେ 'ପୁଲୋମ' ନାମକ ଏକ ରାକ୍ଷସ ଭୃଗୁଙ୍କର ଆଶ୍ରମରେ ଆସି ଉପସ୍ଥିତ ହେଲା । ଏହି ରାକ୍ଷସ ପୁଲୋମାଙ୍କୁ ବିବାହ କରିବାପାଇଁ ବହୁ କାଳରୁ ମନସ୍ଥ କରିଥିଲା ଏବଂ ଏଥିପାଇଁ ପୁଲୋମାଙ୍କ ପିତାଙ୍କୁ ସନିର୍ବନ୍ଧ ଅନୁରୋଧ କରିଥିଲା । ମାତ୍ର ପୁଲୋମାଙ୍କ ପିତା ରାକ୍ଷସର ସେହି ଅବାଞ୍ଛନୀୟ ଅନୁରୋଧକୁ ନିର୍ବିକାରରେ ପ୍ରତ୍ୟାଖ୍ୟାନ କରି ମହର୍ଷି ଭୃଗୁଙ୍କ ହସ୍ତରେ ନିଜର ପରମରୂପବତୀ କନ୍ୟାକୁ ସମର୍ପଣ କରିଥିଲେ । ଭଗ୍ନମନୋରଥ ରାକ୍ଷସ ସେହିଦିନଠୁଁ ପ୍ରତିହିଂସାପରାୟଣ ହୋଇ ପୁଲୋମାଙ୍କୁ ହରଣ କରିନେବାର ସୁଯୋଗ ପ୍ରତୀକ୍ଷା କରି ରହିଥିଲା । ଏବେ ଋଷିପତ୍ନୀଙ୍କୁ ଆଶ୍ରମ କୁଟୀରରେ ଏକାକିନୀ ଥିବାର ଦେଖି ଏହାହିଁ ପ୍ରକୃଷ୍ଟ ସୁଯୋଗ ଭାବି ଦ୍ୱାରରେ ଆସି ଛଦ୍ମବେଶରେ ଉପଗତ ହେଲା ।

ସରଳା ପୁଲୋମା ରାକ୍ଷସର ଦୁରଭିସନ୍ଧି ଅବା ଜାଣିବେ କପରି ? ସେ ତାକୁ ନବାଗତ ଅତିଥି ମନେକରି ସାଦରରେ କୁଟୀରମଧ୍ୟକୁ ପାଛୋଟିନେଲେ ଏବଂ ଫଳମୂଳାଦି ଖାଇବାକୁ ଦେଇ ତାହାର ଯଥୋଚିତ ସତ୍କାର କରିବାକୁ ବସିଲେ । ମାତ୍ର ଦୁର୍ବୃତ୍ତ ରାକ୍ଷସ ତ ସେଥିପାଇଁ ଆସି ନ ଥିଲା; ତେଣୁ ସେ ଆସୁରୀ ମାୟାବଳରେ ସଙ୍ଗେ ସଙ୍ଗେ ଏକ ଭୀଷଣ ବରାହରୂପ ଧରି ଅନ୍ତଃସତ୍ତ୍ୱା ପୁଲୋମାଙ୍କୁ ଝିଙ୍କିନେଇ ପଳାଇ ଗଲା ।



ଚ୍ୟବନଙ୍କର ଅକାଳ ଜନ୍ମ

ଅଗ୍ନିଦେବ ଆଶ୍ରମରେ ଋଷିପତ୍ନୀଙ୍କୁ ଜଗି ରହିଥିଲେ ମଧ୍ୟ ଅସହାୟ ନିରପରାଧା ପୁଲୋମାଙ୍କର ଏ ଦୁରବସ୍ଥାରେ ଆଦୌ ସାହାଯ୍ୟ କରିପାରିଲେ ନାହିଁ । ଦୁର୍ଦ୍ଧର୍ଷରାକ୍ଷସର ଧର୍ଷଣ ସ୍ୱଚକ୍ଷୁରେ ଦେଖି ସୁଦ୍ଧା ସେ ଭୟତ୍ରସ୍ତ ହୋଇ ନିଷ୍କ୍ରିୟ ରହିଲେ । ରାକ୍ଷସର ଦୁର୍ଦ୍ଦମ ପରାକ୍ରମ ନିକଟରେ ତାଙ୍କର ସକଳ ଶକ୍ତି ନିଷ୍ପ୍ରଭ ଓ ମ୍ରିୟମାଣ ହୋଇଗଲା ।

ରାକ୍ଷସ-ଧର୍ଷିତା ପୁଲୋମା ସ୍ୱାମୀଙ୍କ ନାମ ଉଚ୍ଚାରଣ କରି ଉଚ୍ଚ ନାଦରେ କ୍ରନ୍ଦନ କରିବାକୁ ଲାଗିଲେ । ପାପାଶୟ ପୁଲୋମ ତାଙ୍କୁ ଅତି ନିଷ୍ଠୁରଣଭାବରେ ଟାଣିଓଟାରି ଦସ୍ୟୁ ପରି ନେଇ ଚାଲି-ଯାଉଥାଏ । ସହାୟଶୂନ୍ୟା ମାତାର ଏହି ଦାରୁଣ ଦୁର୍ବିପାକ ଦେଖି ଗର୍ଭସ୍ଥ ସନ୍ତାନଟି କ୍ରୋଧରେ ଅସମ୍ଭାଳ ହୋଇଉଠିଲା । ରାକ୍ଷସର ଅତ୍ୟାଚାରରେ ପୁଲୋମାଙ୍କ ଶରୀର ଅତି ଅସ୍ୱାଭାବିକରୂପେ ଇତସ୍ତତଃ ସଂଚାଳିତ ହେବାରୁ ଏବଂ ତାଙ୍କ ହୃଦୟରେ ଭୀଷଣ ଭୟ ଜାତ ହେବାରୁ ହଠାତ୍ ଗର୍ଭଶିଶୁଟି ଭୂତଳରେ ପତିତ ହୋଇଗଲା ।

ସେହି ଅକାଳପ୍ରସୂତ ଶିଶୁଟିର ସର୍ବାଙ୍ଗ ଏକ ଅପୂର୍ବ ତେଜରେ ଉଦ୍ଭାସିତ ହେଉଥିଲା । ଜନ୍ମ ସଙ୍ଗେ ସଙ୍ଗେ ସେ ମାତୃବୈରୀ ପୁଲୋମକୁ ରୋଷକଷାୟିତ ନେତ୍ରରେ ଚାହିଁଦେଲା ମାତ୍ରେ ରାକ୍ଷସଟା ଧୂଧୂ ଜଳି ଭସ୍ମରେ ପରିଣତ ହୋଇଗଲା । ଶିଶୁ-ପୁତ୍ରର ଅଦ୍ଭୁତ ଶକ୍ତି ଦେଖି ମାତା ପୁଲୋମା ବିସ୍ମିତ ହୋଇଗଲେ । ସାରା ବନଭୂମି ସ୍ତବ୍ଧ ହୋଇ ଉଠିଲା ।

ଏହି ସମୟରେ ବ୍ରହ୍ମା ନିଜେ ଆସି ତପୋବନରେ ଆବିର୍ଭୂତ ହେଲେ ଏବଂ ଋଷିପତ୍ନୀଙ୍କୁ ନାନାଭାବରେ ଆଶ୍ୱାସନା ପ୍ରଦାନ କଲେ । ମାତ୍ର ଶୋକାଭିଭୂତା ପୁଲୋମାଙ୍କ ହୃଦୟର ବ୍ୟଥା ଉକ୍ତ

ସାନ୍ତ୍ୱନାରେ ପ୍ରଶମିତ ହେଲା ନାହିଁ । ତାଙ୍କ ଦୁଇ ଚକ୍ଷୁରୁ ଅନର୍ଗଳ ଧାରରେ ପ୍ରବାହିତ ଲୋତକସ୍ରୋତରେ 'ବଧୂସର' ନାମକ ଏକ ନଦୀର ସୃଷ୍ଟି ହେଲା । ତତ୍ପରେ ପୁଲୋମା ନିଜର ସେହି ନବଜାତ ତେଜସ୍ୱୀ ସନ୍ତାନକୁ ବକ୍ଷରେ ଧରି କୁଟୀରକୁ ପ୍ରତ୍ୟାବୃତ୍ତ ହେଲେ । ଗର୍ଭରୁ ଚ୍ୟୁତ ହୋଇ ଭୂମିଷ୍ଠ ହୋଇଥିବାରୁ ସନ୍ତାନଟିର ନାମ ହେଲା 'ଚ୍ୟବନ' । ଏହିନେ ଚ୍ୟବନ ଯେ ଜଣେ ଅଫଳୋଦୟ କର୍ମା ମହାତପା ମୁନି ହୋଇ ପୃଥିବୀରେ ଅକ୍ଷୟ ଯଶର ଅଧିକାରୀ ହେବେ, ଏହା ତାଙ୍କର ଜନ୍ମକାଳୀନ ଅଦ୍ଭୁତ ଦିପ୍ତିରୁ ସ୍ପଷ୍ଟ ଜଣା ପଡ଼ିଗଲା ।

—୨—

ଆଶ୍ରମରେ ସନ୍ଧ୍ୟା

ଅଭିଷେକ କାର୍ଯ୍ୟ ଶେଷ ହେଲାପରେ ଭୃଗୁ ମହର୍ଷି ସ୍ୱୀୟ ତପୋବନକୁ ଫେରିଲେ । ସେ ଆଶ୍ରମର ଉପକଣ୍ଠରେ ପହଞ୍ଚିଲାକ୍ଷଣି ଆଶ୍ରମବାସୀମାନେ ତାହାଙ୍କୁ ପାଛୋଟି ଆଣିବାକୁ ଗଲେ ଏବଂ କୁଟୀରକୁ ଆସିବା ପୂର୍ବରୁ ପୁଲୋମ ରାକ୍ଷସର ଅତ୍ୟାଚାର ଓ ଶିଶୁ ଚ୍ୟବନଙ୍କର ଜନ୍ମବୃତ୍ତାନ୍ତ ତାହାଙ୍କର କର୍ଣ୍ଣଗୋଚର କରାଇଲେ ।

ମହର୍ଷି ଏହା ଶୁଣି ଅତ୍ୟନ୍ତ ମର୍ମାହତ ହେଲେ ଏବଂ ଅଗ୍ନିହିଁ ସକଳ ଅନର୍ଥର ମୂଳକାରଣ ବୋଲି ସ୍ଥିର କଲେ । ଅଗ୍ନି ଯଦି ରାକ୍ଷସ-ଆକ୍ରମଣର ଉପକ୍ରମବେଳେ ପ୍ରତିରୋଧ କରିଥାନ୍ତେ, ତାହାହେଲେ ପୁଲୋମାଙ୍କର ଏ ଶୋଚନୀୟ ଦୁର୍ଗତି କାହିଁକି ହୋଇଥାନ୍ତା ? ଏହା ବିଚାରି ମହର୍ଷି କୋପାବିଷ୍ଟ ହୋଇ ଅଗ୍ନିଙ୍କୁ 'ସର୍ବଭକ୍ଷ' ହେବାପାଇଁ ଅଭିଶାପ ଦେଲେ ।

ଏଭଳି ଘୋର ଅଭିଶାପ ପାଇ ଅଗ୍ନିଦେବ ମର୍ମାନ୍ତିକ ଦୁଃଖ ଅନୁଭବ କଲେ । ଯଦି ତାଙ୍କର ସର୍ବଭକ୍ଷ ରୂପ ଏହିପରି ରହେ,

ତାହାହେଲେ ତାଙ୍କ ସମ୍ମୁଖରେ ଯେ ପଡ଼ିବ ସେ ଭସ୍ମୀଭୂତ ହୋଇଯିବ, ଫଳରେ ସଂସାର ଆଉ ରହିବ ନାହିଁ । କେହି ମଧ୍ୟ ଏଣିକି ଯାଗଯଜ୍ଞ କରିପାରିବେ ନାହିଁ, ରନ୍ଧନାଦି କାର୍ଯ୍ୟ କୌଣସି ଗୃହରେ ସମ୍ଭବ ହୋଇପାରିବ ନାହିଁ । ମହାବିଷମ ପରିସ୍ଥିତି ଉପୁଜିଲା । ଜଗତର କଲ୍ୟାଣକାମୀ ଅଗ୍ନି ସୃଷ୍ଟିର ଅମଙ୍ଗଳ ନିବାରଣପାଇଁ ଶେଷରେ ନିଜର ଜ୍ୱଳନ୍ତ ମୂର୍ତ୍ତିକୁ ଏକାବେଳେ ଲୋପ କରିଦେଲେ । ତେଣୁ କେହି ଆଉ ତାଙ୍କ ଗ୍ରାସରେ ପଡ଼ିବାର ଆଶଙ୍କା ରହିଲା ନାହିଁ । ମାତ୍ର ଏହାଫଳରେ ଆଉ ଏକପ୍ରକାର ଅସୁବିଧା ଜନ୍ମିଲା । ଯେତେ ଚେଷ୍ଟା କଲେହେଁ କୌଣସିଠାରେ ଅଗ୍ନି ପ୍ରଜ୍ୱଳିତ ହେଲା ନାହିଁ । ନିର୍ବାଣଅଗ୍ନି ପୂଜା ଛଡ଼ା ଯାଜ୍ଞିକମାନଙ୍କର ଅନ୍ୟ ଉପାୟ ରହିଲା ନାହିଁ । ଘରେ ଘରେ ଘୋର ଚହଳ ପଡ଼ିଗଲା । କେହି ଖାଦ୍ୟାଦି ପାକ କରିପାରିଲେ ନାହିଁ ।

ସୃଷ୍ଟି କର୍ତ୍ତା ବ୍ରହ୍ମା ତାଙ୍କ ସୃଷ୍ଟିରେ ବିଶୃଙ୍ଖଳା ଓ ସଙ୍କଟ ଅବସ୍ଥା ଆସିଯିବାର ଦେଖି ବଡ଼ ବିଚଳିତ ଓ ଚିନ୍ତିତ ହୋଇ ପଡ଼ିଲେ । ଅନନ୍ୟୋପାୟ ହୋଇ ସେ ଅଗ୍ନିଙ୍କ ନିକଟକୁ ଧାଇଁଲେ ଏବଂ କପରି ଲୋକରକ୍ଷା ହେବ, ଏ ବିଷୟରେ ବହୁତ ବୁଝାଇ ଶେଷରେ କହିଲେ :

"ହେ ଅନଳଦେବ ! ତୁମ ଅଭାବରେ ଜଗତରେ ବହୁ ବିପର୍ଯ୍ୟୟ ଘଟିବ; ତେଣୁ ତୁମର ଜ୍ୱଳନ୍ତ ମୂର୍ତ୍ତି ଜଗତର ହିତପାଇଁ ନିତାନ୍ତ ଆବଶ୍ୟକ । ପୁଣି ଭୃଗୁଙ୍କର ଅଭିଶାପ ଯେବେ କାର୍ଯ୍ୟରେ ପରିଣତ ନ ହୁଏ, ତାହାହେଲେ ତାଙ୍କର କୋପ ଆହୁରି ପ୍ରଚଣ୍ଡ ହୋଇ କି ସ୍ୱର୍ଗ କି ମର୍ତ୍ତ୍ୟ ଉଭୟ ଲୋକରେ ବିଭ୍ରାଟ ସୃଷ୍ଟି କରିବ । ଏଣୁ ମୋର ଇଚ୍ଛା ଏହି ଯେ, ଆଜିଠାରୁ ତୁମ ଜ୍ୱଳନ୍ତ ମୂର୍ତ୍ତିର

ଗୋଟିଏ ଅଂଶ 'ହବ୍ୟାଦ ଅଗ୍ନି' ନାମରେ ଅଭିହିତ ହେବ ଏବଂ ତାହାଙ୍କୁ ସର୍ବଭକ୍ଷକ ରୂପ ଲାଭ କରି ଜଗତରେ ପ୍ରସିଦ୍ଧ ହେବ । ଏହାଛଡ଼ା ତୁମର ଅବଶିଷ୍ଟ ଜ୍ୱଳନ୍ତ ମୂର୍ତ୍ତି ସୃଷ୍ଟି ରକ୍ଷା ତଥା ଲୋକ-ମଙ୍ଗଳରେ ପୂର୍ବପରି ସାହାଯ୍ୟ କରିବ । ଏବେ ମୋର ଅନୁରୋଧ ମାନି ତୁମେ ତୁମର ଲୁପ୍ତ ମୂର୍ତ୍ତିକୁ ପୁଣି ଲେଲିହାନ-ଶିଖାଯୁକ୍ତ କର ।"

ଲୋକପିତା ବ୍ରହ୍ମାଙ୍କର ଏହି ସାଧୁ ପ୍ରସ୍ତାବରେ ଅଗ୍ନିଦେବ ଏକମତ ହେଲେ । ପୁଣି ତାଙ୍କ ଜ୍ୱଳନ୍ତ ରୂପରେ ପାଇ ପୃଥିବୀ ଧନ୍ୟ ହେଲା । 'ହବ୍ୟାଦ' ଅର୍ଥ ବିଷେସ । କେବଳ ସଂହାର ଓ ସୃଷ୍ଟିର ଅମଙ୍ଗଳ-ଉଚ୍ଛେଦରେ ତାଙ୍କର ହବ୍ୟାଦାଗ୍ନି ମୂର୍ତ୍ତି ସେହି ଦିନୁଁ ନିୟୋଜିତ ହେଲା । ଏପରି ହେବାଦ୍ୱାରା ମହର୍ଷି ଭୃଗୁଙ୍କ ଅଭିଶାପ କାର୍ଯ୍ୟକାରୀ ହେଲା ଏବଂ ତାହା ସଙ୍ଗେ ସଙ୍ଗେ ବିଶ୍ୱର ସର୍ବାଙ୍ଗୀନ ହିତ ସାଧିତ ହେଲା ।

—ତୀ—

କାଳ କ୍ରମେ ଫିଟି ପୁଷ୍ପ ହୋଇଫୁଟେ......

ଚ୍ୟବନ ନେସନ୍ତପରି ଶୈଶବ ଅତିକ୍ରମ କରି ବାଲ୍ୟରେ ପଦାର୍ପଣ କଲେ । ତାଙ୍କ ଜ୍ଞାନର ସ୍ଫୁରଣ ଏତେ କ୍ଷିପ୍ର ଗତିରେ ସାଧିତ ହେଲା ଯେ, ପିତା ଭୃଗୁ ତାହା ଦେଖି ବିସ୍ମିତ ହୋଇଗଲେ । ଏଥିପାଇଁ ପିତା ଅନେକ ସମୟରେ ପୁତ୍ରକୁ ପାଖରେ ବସାଇ ନାନା କଠିନ ତତ୍ତ୍ୱର ଆଲୋଚନା କରନ୍ତି । ସେତେବେଳେ ଚ୍ୟବନ ମଧ୍ୟେ ମଧ୍ୟେ ଏପରି ଗୋଟିଏ ଗୋଟିଏ ଦୁରୂହ ପ୍ରଶ୍ନ ପଚାରିଦିଅନ୍ତି ଯେ, ତାହାର ଯଥାଯଥ ଉତ୍ତର ଦେବା-ପାଇଁ ଭୃଗୁ ଅସମର୍ଥ ହୋଇପଡ଼ନ୍ତି ।

ଭୃଗୁ ଯାହା ବ୍ୟାଖ୍ୟା କରନ୍ତି, ତହିଁରେ ଚ୍ୟବନଙ୍କର ମନ ପୂରି ମାନେ ନାହିଁ । କିନ୍ତୁ ସେ ପିତାଙ୍କ ମୁଖରୁ ଯାହା ଶୁଣନ୍ତି, ତାହାକୁ ଏକାନ୍ତରେ ବସି ଗମ୍ଭୀରଭାବରେ ଚିନ୍ତା କରନ୍ତି । ଫଳରେ ତତ୍‌ସମ୍ପର୍କୀୟ ଅନେକ ପ୍ରଶ୍ନ ତାଙ୍କ ମନରେ ସ୍ୱତଃ ଜାଗରିତ ହୁଏ । ସେ ନିଜ ପ୍ରଶ୍ନାବଳୀର ନିଜେ ସମାଲୋଚକ ହୋଇ ଶେଷରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି, ପିତାଙ୍କ ନିକଟରେ ଯାଇ ତାହା ପ୍ରକାଶ କରନ୍ତି । ପୁତ୍ରମୁଖରୁ କଠିନ ସମସ୍ୟାମାନଙ୍କର ଏପରି ସରଳ ସମାଧାନ ଶୁଣି ଶୁଣି ଭୃଗୁ ଚମତ୍କୃତ ହୋଇଯାନ୍ତି । ପୁତ୍ର ଯେ ଜ୍ଞାନରାଜ୍ୟରେ ତାଙ୍କ ବାଲ୍ୟବୟସରୁ ଟପିଯାଇସାରିଲାଣି, ଏହା ଭାବିଦେଲାମାତ୍ରେ ତାଙ୍କର ପିତୃହୃଦୟ ଗର୍ବରେ ବିସ୍ଫାରିତ ହୋଇଉଠେ ।

ଦିନେ ବାଳକ ଚ୍ୟବନ ଜିଜ୍ଞାସୁ ନୟନରେ ଯାଇ ମହର୍ଷିଙ୍କୁ କହିଲେ :

"ପିତା ! 'ସଞ୍ଜୀବନୀ' ବିଦ୍ୟା ଶିକ୍ଷା କରିବାପାଇଁ ମୋ ହୃଦୟରେ ପ୍ରବଳ ସ୍ପୃହା ଜାଗ୍ରତ ହୋଇଛି । ସେହି ବିଦ୍ୟା କିପରି ଲବ୍‌ଧ ହୁଏ ଏବଂ ସେଥିଲାଗି କି ପ୍ରକାର ସାଧନା ଆବଶ୍ୟକ, ମୋତେ ବୁଝାଇ କହନ୍ତୁ ।"

ଭୃଗୁ ବାଳକପ୍ରାଣର ଆଗ୍ରହ ଦେଖି କହିଲେ :

"ବତ୍ସ ! ସଞ୍ଜୀବନୀ ବିଦ୍ୟା ଅତି କଠିନ ବିଦ୍ୟା । ବ୍ରହ୍ମାଙ୍କଠାରୁ ମୁଁ ଏହାର ଶିକ୍ଷାପ୍ରଣାଳୀ ଆୟତ୍ତ କରିଥିଲି । ଏହି ବିଦ୍ୟା ଶିଖିବାକୁ ଯିବାପୂର୍ବରୁ ମନର ସ୍ଥିରତା ଓ ଆତ୍ମାର ଶୁଦ୍ଧତା ଆଣିବାକୁ ପଡ଼େ । ତାହା ନ ହେଲେ ସାଧକର ସମସ୍ତ ସାଧନା ବ୍ୟର୍ଥ ହୋଇଯାଏ ।"

ଏହା ଶୁଣି ଚ୍ୟବନ ପଚାରିଲେ :

"ମନର ସ୍ଥିରତା କିପରି ଆସେ ପିତା !"

ଭୃଗୁ ବୁଝାଇଦେଲେ :

"ମନର ପ୍ରକୃତି ଅତି ଚଞ୍ଚଳ । କୌଣସି କାର୍ଯ୍ୟରେ ସେ ଅଧିକ କାଳ ସ୍ଥିର ରହିପାରେ ନାହିଁ । ତେଣୁ ସାଧନାରେ ବହୁ ବ୍ୟାଘାତ ଉପସ୍ଥିତ ହୁଏ । ପ୍ରଥମେ ନୀରବ ଜପଦ୍ୱାରା ମନକୁ ଅନ୍ତର୍ମୁଖୀ କରିବାକୁ ପଡ଼େ । ଏପରି କରିବାଦ୍ୱାରା କ୍ରମେ ମନର ଚଞ୍ଚଳତା ନଷ୍ଟ ହୋଇ ସ୍ଥିରଭାବ ଆସେ । ସେତେବେଳେ ମନୁଷ୍ୟ ସବୁ ଅବସ୍ଥାରେ ସମଭାବାପନ୍ନ ହୁଏ । ଏହି ଅବସ୍ଥାରେ ଉପନୀତ ହେଲେ କୌଣସି ବାଧାବିଘ୍ନ ସାଧକକୁ ଆଉ ଲକ୍ଷଚ୍ୟୁତ କରିପାରେ ନାହିଁ । ଏହିରୂପେ ମନର ସ୍ଥିରତା ଆଣିସାରିଲାପରେ ଆତ୍ମାର ଶୁଦ୍ଧତାପାଇଁ ସାଧନା କରିବାକୁ ହେବ ।"

ଚ୍ୟବନ ଉଦ୍‌ବିଗ୍ନ ହୋଇ ପଚାରିଲେ :

ପିତା ! ଆତ୍ମାର ଏହି ଶୁଦ୍ଧତା କିପରି ଆସେ, ଏବେ ବୁଝାନ୍ତୁ ।"

ଭୃଗୁ ବୁଝାଇବସିଲେ :

"କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ—ଏହି ଛଅ ପ୍ରବୃତ୍ତି ହେଉଛନ୍ତି ମନୁଷ୍ୟର ଷଡ଼ରିପୁ । ଏକାଗ୍ର ତପସ୍ୟାଦ୍ୱାରା ଏମାନଙ୍କୁ କେବଳ ନଷ୍ଟ କରାଯାଇପାରେ । ଏହି ଷଡ଼୍‌ରିପୁର ପ୍ରଭାବ ମନଉପରୁ ଅପସାରିତ ହୋଇଗଲେ ବଳେ ବଳେ ଆତ୍ମାର ଶୁଦ୍ଧତା ଚାଲିଆସେ । ତେଣିକି ଯେକୌଣସି କଷ୍ଟସାଧ୍ୟ ବିଦ୍ୟା ଆୟତ୍ତ କରିବା ସାଧକ ପକ୍ଷରେ ସହଜସାଧ୍ୟ ହୋଇଯାଏ ।"

ପିତାଙ୍କଠାରୁ ସଞ୍ଜୀବନୀ ବିଦ୍ୟା ଶିକ୍ଷାର ପ୍ରଥମ ଉପାୟ ଜାଣିପାରି ବାଳକ ଚ୍ୟବନ କୃତକୃତ୍ୟ ହୋଇଗଲେ । ଆଉ ଦଣ୍ଡେ ହେଁ ଆଶ୍ରମବାସୀ ହେବାକୁ ମନ ବଳାଇଲେ ନାହିଁ । ସେ ତପୋବନଠାରୁ କିଛିଦୂରକୁ ଚାଲିଯାଇ ଏକ ନିର୍ଜନ ସ୍ଥାନରେ ବସିଲେ ଏବଂ ସେଇଠାରେ ଚିତ୍ତକୁ ସଂଯତ କରି ଆତ୍ମାର ଶୁଦ୍ଧୀକରଣ ପାଇଁ କଠିନ ତପସ୍ୟାରେ ନିବିଷ୍ଟ ରହିଲେ ।

କିଛି କାଳପରେ ସାଧନାରେ ସଫଳତା ଆସିଲା । ସିଦ୍ଧାର୍ଥ ବାଳକ ଆବେଗଭରା ପ୍ରାଣରେ ଆଶ୍ରମକୁ ଆସି ପିତୃଚରଣ ବନ୍ଦନା କଲେ । ପୁତ୍ରର ମୁଖମଣ୍ଡଳରୁ ତପଃସିଦ୍ଧିର ଆଭା ଲକ୍ଷ୍ୟ କରି ଭୃଗୁ ପରମ ଆନନ୍ଦିତ ହେଲେ । ତତ୍ପରେ ସେ ଚ୍ୟବନଙ୍କୁ ସଞ୍ଜୀବନୀ ବିଦ୍ୟା ଶିକ୍ଷା ଦେଲେ ।

ଏହିରୂପେ ଋଷିପୁତ୍ର ଚ୍ୟବନ ନିଜର ପ୍ରଜ୍ଞା ଓ ସାଧନା-ବଳରେ ବାଲ୍ୟକାଳରୁ ଅସାଧ୍ୟ ସଞ୍ଜୀବନୀ ବିଦ୍ୟାରେ ପ୍ରବୀଣ ହୋଇ ପୃଥିବୀରେ ଅକ୍ଷୟ ଖ୍ୟାତି ଅର୍ଜନ କଲେ । ଏହି ବାଳକ ଚ୍ୟବନ ପରବର୍ତ୍ତୀ ଜୀବନରେ ମହାତପା ମହର୍ଷିର ଗୌରବ ଲାଭ କରି ବହୁ ଲୋକହିତକର କାର୍ଯ୍ୟ ସମ୍ପାଦନଦ୍ୱାରା ଅମର ହେଲେ ।

---

# ମୃତ୍ୟୁମୁଖରୁ ମୁକ୍ତି

## ( ବେଦ ଗଳ୍ପ )

—୧—

ଗଣନାହୀନ ପ୍ରାଚୀନ କାଳ……

ଇକ୍ଷ୍ୱାକୁ ବୋଲି ଏକ ଧାର୍ମିକ ଓ ଲୋକପ୍ରିୟ ରାଜା ଥିଲେ । ତାଙ୍କର ନାମ ଅନୁସାରେ ତାଙ୍କ ବଂଶର ନାମ ଇକ୍ଷ୍ୱାକୁବଂଶ ବୋଲି ଭାରତରେ ପ୍ରସିଦ୍ଧି ଲାଭ କଲା ।

ସେହି ପ୍ରଖ୍ୟାତ କ୍ଷତ୍ରିୟ ରାଜବଂଶରେ ପରେ ହରିଶ୍ଚନ୍ଦ୍ର ନାମରେ ଜଣେ ପୁଣ୍ୟବାନ୍ ରାଜା ଜାତ ହେଲେ । ସେ ରାଜ୍ୟର ଏତେ ମଙ୍ଗଳ ସାଧନ କଲେ ଯେ, ପ୍ରଜାମାନେ ତାଙ୍କୁ ଦେବତାପରି ପୂଜା କରିବାକୁ ଲାଗିଲେ ।

ହରିଶ୍ଚନ୍ଦ୍ରଙ୍କ ରାଜପ୍ରାସାଦର ଶୋଭା ଇନ୍ଦ୍ରପୁରୀ ପରି ଅତ୍ୟନ୍ତ ମନୋରମ ଥିଲା । ଏକଶତ ସୁନ୍ଦରୀ ରାଣୀ ଓ ଅସଂଖ୍ୟ ଦାସଦାସୀ ଅନ୍ତଃପୁରକୁ ପରିପୂର୍ଣ୍ଣ କରି ରଖିଥିଲେ । ଅତୁଳ ଐଶ୍ୱର୍ଯ୍ୟ ଓ ଅଖଣ୍ଡ କ୍ଷମତାର ଅଧିକାରୀ ଥିଲେହେଁ ହରିଶ୍ଚନ୍ଦ୍ରଙ୍କ ହୃଦୟ ଆଦୌ ପ୍ରସନ୍ନ ନ ଥିଲା । ଏକ ପ୍ରଚ୍ଛନ୍ନ ବିଷାଦର କାଳିମାରେ ତାଙ୍କର ମୁଖମଣ୍ଡଳ ସର୍ବଦା ମଳିନ ଦିଶୁଥିଲା । ସେଥିପାଇଁ ସେ ଘୋର ଅଶାନ୍ତି ଓ ମନୋଦୁଃଖରେ କାଳ ଯାପନ କରୁଥିଲେ ।

ରାଜକାର୍ଯ୍ୟରେ ତାଙ୍କର ଆଉ ଶ୍ରଦ୍ଧା ରହିଲା ନାହିଁ । ସେ ଏଣିକି ବରାବର ଅନ୍ୟମନସ୍କ ହେବାକୁ ଲାଗିଲେ । ଏ ସମସ୍ତର ଏକମାତ୍ର କାରଣ ହେଉଛି ପୁତ୍ରସନ୍ତାନର ଅଭାବ ।

କ୍ରମେ ହରିଶ୍ଚନ୍ଦ୍ରଙ୍କ ଜୀବନରେ ବାର୍ଦ୍ଧକ୍ୟର ଉପକ୍ରମ ହେଲା । ରାଜଦାଣ୍ଡରେ ଶିଶୁଟିଏ ଦେଖିଲେ ତାଙ୍କର ବକ୍ଷ ଘୋର ଦୁଃଖରେ ବିଦୀର୍ଣ୍ଣ ହେଲା ଭଳି ଲାଗିଲା । ସେ ସେତେବେଳେ ଭାବିଲେ :

ଆହା ! ମୋର ଏହିପରି କୁମାରଟିଏ ଥାଆନ୍ତା ! ତାର ସୁନ୍ଦର ଓଷ୍ଠାଧାରରେ ହାସ୍ୟ ଫୁଟିଉଠୁଥାନ୍ତା ! ତା ଶିଶୁ କଣ୍ଠର ମଧୁର ଦରୋଟି ବଚନ ମୋର କର୍ଣ୍ଣରେ ଅମୃତ ଢାଳୁଥାନ୍ତା ! ଚଞ୍ଚଳ ଗତିରେ ଧାଇଁଆସି ସେ ମୋର କୋଳରେ ବସିପଡୁଥାନ୍ତା ! ଆହା, ମୁଁ କି ସ୍ୱର୍ଗସୁଖ ଭୋଗ କରନ୍ତି ! ମାତ୍ର ହାୟ, ମୋର ସେପରି ସୌଭାଗ୍ୟ କାହିଁ ! ମୋ ଜୀବନ ଯେ ଅଭିଶପ୍ତ ! ମୋହରି ପରେ ପରେ ଏ ରାଜବଂଶର ଅବସାନ !"

ଆଉ ସେ ଭାବିପାରନ୍ତି ନାହିଁ । ହୃଦୟ ଗଭୀର ନୈରାଶ୍ୟରେ ଭାଙ୍ଗିପଡ଼େ ।

ଏହିରୂପେ ପୁଣି କେତେ ବର୍ଷ ଅତିବାହିତ ହୋଇଗଲା । ପୁତ୍ରଲାଭର କାମନା ହରିଶ୍ଚନ୍ଦ୍ରଙ୍କ ହୃଦୟକୁ ସର୍ବଦା ଆଚ୍ଛନ୍ନ କରି ରହିଲା; ମାତ୍ର ସେହି କାମନା ପୂର୍ଣ୍ଣ ହେବାର ଆଶା କାହିଁ ?

ସୌଭାଗ୍ୟବଶ୍ୟତଃ ବହୁ କାଳପରେ ଦିନେ ଦେବର୍ଷି ନାରଦ ରାଜପୁରୀରେ ଆସି ପଦାର୍ପଣ କଲେ । ନାରଦ ସଂସାରର ହିତ-କାର୍ଯ୍ୟରେ ନିଜର ଜୀବନ ଉତ୍ସର୍ଗ କରିଥାନ୍ତି ବୋଲି ରାଜା ତାଙ୍କୁ ଅତ୍ୟନ୍ତ ଭକ୍ତି ଓ ସମ୍ମାନ କରନ୍ତି । ଏବେ ସେହି ମହାତ୍ମାଙ୍କୁ ସମ୍ମୁଖରେ ପାଇ ହରିଶ୍ଚନ୍ଦ୍ର ଆପଣାକୁ କୃତ୍ୟକୃତ୍ୟ ମନେକଲେ ଏବଂ ଯଥୋଚିତ ପାଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ ସ୍ୱାଗତ ଜଣାଇଲେ ।

ରାଜାଙ୍କ ପରିଚର୍ଯ୍ୟାରେ ନାରଦ ଅତୀବ ମୁଗ୍ଧ ହୋଇଗଲେ, ମାତ୍ର ତାଙ୍କଠାରେ ପ୍ରଫୁଲ୍ଲତାର ଅଭାବ ଦେଖି ପଚାରିଲେ :

"ରାଜା ! ତୁମେ ଏପରି ବିଷଣ୍ଣ ଦେଖାଯାଉଛ କାହିଁକି ? କେଉଁ କାରଣରୁ ତୁମର ମୁଖମଣ୍ଡଳରେ ଦୁଃଖର ଛାୟା ଘୋଟିରହିଛି ? ନିର୍ମଳ ମନରେ ପ୍ରକୃତ କଥା ଫିଟାଇ କହ । ମୋଦ୍ୱାରା ଯଦି କିଛି ପ୍ରତିକାର ସମ୍ଭବ ହୋଇପାରେ, ତାହାହେଲେ ମୁଁ ସେଥିପାଇଁ କଦାପି ପଶ୍ଚାତ୍ପଦ ହେବି ନାହିଁ ।"



[ ଦେବର୍ଷି ନାରଦଙ୍କୁ ରାଜା ହରିଶ୍ଚନ୍ଦ୍ରଙ୍କର ସମ୍ବର୍ଦ୍ଧନା ]

ହରିଶ୍ଚନ୍ଦ୍ରଙ୍କ ମନରେ ଶାନ୍ତି ଓ ଆଶ୍ୱାସନା ଆସିଲା । ସେ କରଯୋଡ଼ି କହିଲେ :

"ଦେବର୍ଷି ! ଆପଣଙ୍କୁ ମୋର କେଉଁ କଥା ବା ଅଜ୍ଞାତ ? ଆପଣ ଜାଣନ୍ତି, ମୁଁ ଅପୁତ୍ରିକ । ପୁତ୍ରଟିଏ ଯାହାର କୋଳ ମଣ୍ଡନ

ନ କରେ, ତାର ଜୀବନ ଏ ଜଗତରେ ନିରର୍ଥକ । ତାର ଗୃହ ଶ୍ମଶାନଠାରୁ ବଳି ଦୁଃଖର ସ୍ଥାନ । ସେହି ପୁତ୍ର-ଅଭାବର ଚିନ୍ତାରେ ମୁଁ ଏତେ ଶୋକଜର୍ଜରିତ ହୋଇ ପଡ଼ୁଛି । ଦୟା କରି ମୋର ଏହି ଚିନ୍ତା-ଅପସାରଣର ଉପାୟ ବତାଇ ଦିଅନ୍ତୁ ।”

ଏହା ଶୁଣି ନାରଦ ଈଷତ୍ ହସି କହିଲେ :

“ରାଜା ! ତୁମେ ଯାହା କହିଲ, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ‘ବେଦ’ କହେ, ପ୍ରତ୍ୟେକ ମନୁଷ୍ୟ ତିନିଗୋଟି ଋଣ ନେଇ ଜନ୍ମଲାଭ କରେ । ତେଣୁ ତିନୋଟିଯାକ ଋଣ ପରିଶୋଧ କରିବା ହିଁ ମନୁଷ୍ୟର କର୍ତ୍ତବ୍ୟ । ସେହି ଋଣ ତିନୋଟି ହେଉଛି...ଋଷିଋଣ, ଦେବଋଣ ଓ ପିତୃଋଣ । ଅଧ୍ୟୟନଦ୍ୱାରା ଋଷିଋଣ ପରିଶୋଧ କରାଯାଏ, ଯାଗଯଜ୍ଞଦ୍ୱାରା ଦେବଋଣରୁ ମୁକ୍ତି ମିଳେ ଏବଂ ପୁତ୍ରଲାଭଦ୍ୱାରା ପିତୃଋଣ ପରିଶୋଧ କରାହୁଏ । ତେଣୁ ପିତୃଋଣରୁ ମୁକ୍ତ ହେବା ତୁମର କର୍ତ୍ତବ୍ୟ । ଏବେ ମୋର ଉପଦେଶ ମାନି ତୁମେ ଅତି ନିଷ୍ଠାପରଭାବରେ ବରୁଣଦେବଙ୍କୁ ଧ୍ୟାନ କର । ସେ ସନ୍ତୁଷ୍ଟ ହେଲେ ତୁମର ପୁତ୍ରକାମନା ନିଶ୍ଚୟ ଚରିତାର୍ଥ ହେବ ।”

ରାଜା ଏବେ ଅକୂଳରେ କୂଳ ପାଇଲେ । ସେ କୃତଜ୍ଞ ଓ ଭକ୍ତିନମ୍ର ହୃଦୟରେ ନାରଦଙ୍କର ପଦବନ୍ଦନା କରିବାକୁ ଲାଗିଲେ । ଦେବର୍ଷି ସନ୍ତୁଷ୍ଟ ହୋଇ ଅଳ୍ପ ସମୟରେ ରାଜପୁରୀ ଛାଡ଼ି ଅନ୍ୟତ୍ର ପ୍ରସ୍ଥାନ କଲେ ।

— ୨ —

ଦେବକୃପାରେ ସବୁ ସମ୍ଭବ ହୁଏ......

ରାଜା ହରିଶ୍ଚନ୍ଦ୍ର ଅତି ଶୁଦ୍ଧପୂତଭାବରେ ନିର୍ଜନରେ ବସି ବରୁଣଦେବତାଙ୍କୁ ଆରାଧନା କରିବାକୁ ଲାଗିଲେ । ମନ ମଧ୍ୟରେ

ସେ ସର୍ବଦା ବରୁଣଙ୍କୁ ଧ୍ୟାନ କରୁଥାନ୍ତି । ଉପାସନାରେ ଯେତିକି ସମୟ ଅତିବାହିତ ହେଉଥାଏ, ରାଜାଙ୍କ ମନରେ ସନ୍ତାନଲାଭର ଆଶା ସେତିକି ବୃଦ୍ଧି ପାଉଥାଏ । ଶେଷରେ ସେ ପୁତ୍ରମୁଖଦର୍ଶନର ମୋହରେ ଏପରି ଅନ୍ଧ ହୋଇପଡ଼ିଲେ ଯେ ଦିନେ ବରୁଣଙ୍କୁ ପ୍ରାର୍ଥନା କରୁ କରୁ କହିପକାଇଲେ :

"ହେ ଦେବତା ! ପୁତ୍ରଟିଏ ନ ପାଇବା ପର୍ଯ୍ୟନ୍ତ ମୋର ପିତୃଋଣ ପରିଶୋଧ ସମ୍ଭବ ହୋଇପାରିବ ନାହିଁ । ଏହି ଉଦ୍ଦେଶ୍ୟଟି ସାଧିତ ହୋଇଗଲେ ମୋର ଆଉ କୌଣସି ଶୋକ ରହିବ ନାହିଁ । ମୁଁ ସତ୍ୟ କରୁଛି, ଆପଣଙ୍କ କୃପାରୁ ମୋର ଯେଉଁ ପୁତ୍ରଟି ହେବ, ତାକୁ ବେଦବିଧି ଅନୁଯାୟୀ ନିଶ୍ଚୟ ଆପଣଙ୍କୁ ସମର୍ପଣ କରିବି ।"

ରାଜାଙ୍କ ଗଭୀର ଧ୍ୟାନ ଓ ନିଷ୍ଠାପର ପୂଜାରେ ବରୁଣଦେବ ପ୍ରସନ୍ନ ହେଲେ । ତାଙ୍କରି ଦୟାରୁ ଶେଷରେ ପୁତ୍ରସନ୍ତାନଟିଏ ଜନ୍ମି ଅନ୍ତଃପୁର ଆଲୋକିତ କଲା । ହରିଶ୍ଚନ୍ଦ୍ର ଅପାର ଆହ୍ଲାଦରେ ଆତ୍ମହରା ହୋଇଗଲେ ।

ସଙ୍ଗେ ସଙ୍ଗେ ସମସ୍ତ ରାଜଧାନୀରେ ହର୍ଷର ବନ୍ୟା ଖେଳିଗଲା । ବାଦ୍ୟବାଜଣା, ନୃତ୍ୟଗୀତରେ ଆକାଶପବନ ଫାଟି-ପଡ଼ିଲା । ରାଜବାଟୀରେ କୁମାରଜନ୍ମୋତ୍ସବ ମହାସମାରୋହରେ ଅନୁଷ୍ଠିତ ହେଲା ।

ଠିକ୍ ଏହି ସମୟରେ ହଠାତ୍ ବରୁଣ ଆସି ରାଜପୁରୀରେ ଉପସ୍ଥିତ ହେଲେ । ସେ ହରିଶ୍ଚନ୍ଦ୍ରଙ୍କୁ ଲକ୍ଷି କହିଲେ :

"ହେ ରାଜା ! ପୁତ୍ରଲାଭଦ୍ୱାରା ତୁମେ ଅପୁତ୍ରିକତା ଦୋଷରୁ ତଥା ପିତୃଋଣରୁ ସଂପୂର୍ଣ୍ଣ ମୁକ୍ତ ହୋଇଅଛ । ଏବେ ନିଜର ସତ୍ୟ ଅନୁସାରେ ଶିଶୁଟିକୁ ମୋତେ ବଳିରୂପେ ଅର୍ପଣ କର ।"

ରାଜା ହରିଶ୍ଚନ୍ଦ୍ର ପୁତ୍ର ପ୍ରାପ୍ତିର ଅସୀମ ଆନନ୍ଦରେ ବିହ୍ୱଳଥିବା ସମୟରେ ବରୁଣଙ୍କର ଏହି ଦାରୁଣ ବଚନ ତାଙ୍କ ଉପରେ ଘୋର ବଜ୍ରପାତ ପରି ହେଲା । ସେ ନିରୁପାୟ ହୋଇ କର ଯୋଡ଼ି ପ୍ରାର୍ଥନା କଲେ :

"ହେ ଦେବତା ! ଶିଶୁଟି ସଦ୍ୟଜାତ ଥିବାରୁ ବର୍ତ୍ତମାନ ଅପବିତ୍ର । ଦଶଦିନ ପରେ ପବିତ୍ର ହେଲେ ଯାଇ ବଳିପାଇଁ ଉପଯୁକ୍ତ ହେବ । ତେଣୁ ଦୟାକରି ଆପଣ ସେତେବେଳ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ ।"

ବରୁଣ କିଛି ନ କହି ପ୍ରସ୍ଥାନ କଲେ, ଏବଂ ଠିକ୍ ଦଶ ଦିନ-ପରେ ପୁଣି ଆସି ଉପସ୍ଥିତ ହେଲେ । ରାଜା ଏଥର କହିଲେ :

"ଶିଶୁଟିର ଦନ୍ତୋଦଗମ ହୋଇ ନାହିଁ । ତାହା ହେବା-ମାତ୍ରେ ମୁଁ ତାକୁ ଆପଣଙ୍କୁ ଅର୍ପଣ କରିବି ।"

ଏଥର ମଧ୍ୟ ବରୁଣ ନୀରବରେ ଫେରିଗଲେ ଏବଂ ଶିଶୁଟିର ଦନ୍ତ ଉଦ୍‌ଗମନ ପରେ ନଅରରେ ଆସି ଉପଗତ ହେଲେ । ହୃଦୟରେ ପୁତ୍ରମୋହ ପ୍ରବଳ ହୋଇଯାଇଥିବାରୁ ରାଜା ପୁଣି ସମୟ ନେବାପାଇଁ ବରୁଣଙ୍କୁ ଜଣାଇଲେ :

"ପ୍ରଭୁ ! ପିଲାଟିର ଦନ୍ତ ପଡ଼ିବାଯାଏ ତାକୁ ମୁଁ ପାଖରେ ରଖିବାପାଇଁ ଅନୁମତି ଦିଅନ୍ତୁ । ତା ପରେ ମୁଁ ମୋର ସତ୍ୟରକ୍ଷା କରି ଆପଣଙ୍କ ଉଦ୍ଦେଶ୍ୟରେ ତାକୁ ନିଶ୍ଚୟ ବଳି ପ୍ରଦାନ କରିବି ।"

ଏହିରୂପେ ହରିଶ୍ଚନ୍ଦ୍ର ଥରକୁ ଥର ବରୁଣଙ୍କୁ ଫେରାଇ-ଦେଲେ । ବରୁଣ ମଧ୍ୟ ପ୍ରତିଥର ଧୈର୍ଯ୍ୟ ଧରି ବାହୁଡ଼ି ଯାଉଥାନ୍ତି । ଅନ୍ତରରେ ପୁତ୍ରବାତ୍ସଲ୍ୟଯୋଗୁ ଯେ ରାଜା ନାନା ଛଳନାରେ ସମୟ ଗଡ଼ାଉଛନ୍ତି, ଏହା ବରୁଣ ବେଶ୍ ବୁଝିପାରୁଥାନ୍ତି ।

ହରିଶ୍ଚନ୍ଦ୍ର କୁଳପ୍ରଥାର ପୁତ୍ରଟିର ନାମ ରଖିଥାନ୍ତି 'ରୋହିତ' । ବର୍ଷପରେ ବର୍ଷ ଅତିକ୍ରାନ୍ତ ହେଲା । ରୋହିତ କ୍ରମେ ଯୌବନରେ ପଦାର୍ପଣ କଲା । ପୁତ୍ରକୁ ବୁଦ୍ଧିମାନ୍ ଓ ଯୋଗ୍ୟ ହୋଇଯିବା ଦେଖି ରାଜା ଦିନେ ତାକୁ ପାଖରେ ବସାଇ ତାର ଜନ୍ମବୃତ୍ତାନ୍ତ ଓ ବରୁଣଙ୍କ ନିକଟରେ ନିଜର ସତ୍ୟ ବିଷୟ ବୁଝାଇ କହିଲେ ।

ରୋହିତ ପିତାଙ୍କ ମୁଖରୁ ସମସ୍ତ ଘଟଣା ଶ୍ରବଣ କଲାପରେ ଆଉ ରାଜପୁରୀରେ ରହିଲେ ନାହିଁ । ସେତେବେଳେ ତାଙ୍କ ଦେହରେ ଯୌବନର ପ୍ରଭା, ପ୍ରତି ଅବୟବରେ କ୍ଷତ୍ରିୟୋଚିତ ଶୌର୍ଯ୍ୟ, ମନରେ ଅଦମ୍ୟ ସାହସ । ସେ ରାଜ୍ୟ ରାଜପୁରୀ ଓ ପିତାମାତା, ସବୁରି ମାୟା ଛିନ୍ନ କରି ସଙ୍ଗେ ସଙ୍ଗେ ବନକୁ ଚାଲିଗଲେ ।

ଗହନ ବନଭୂମିରେ ରହି ରୋହିତ ଭାବିଲେ—ରାଜବଂଶରେ ଜନ୍ମି, ବୀରହୃଦୟ ପାଇ, ଥରୁ ପରି ନିଜ ଶରୀରକୁ ନେଇ ଯଜ୍ଞକାଷ୍ଠରେ ଆବଦ୍ଧ କରିବା ହୀନ କାପୁରୁଷତା ଛଡ଼ା ଆଉ କିଛି ନୁହେଁ । ଶ୍ରେଷ୍ଠ ମନୁଷ୍ୟଜୀବନକୁ ମୂର୍ଖ ଭଳି ଏପରି ନଷ୍ଟ କରିଦେବା ମଧ୍ୟ ଏକ ଉତ୍କଟ ଅପରାଧ ।

ଏଣେ ଦ୍ୱାଦଶ ବର୍ଷ ଅପେକ୍ଷା କରି ଶେଷରେ ବରୁଣଦେବ କ୍ରୋଧରେ ଜର୍ଜର ହୋଇଉଠିଲେ । ସେ ଯେ ପ୍ରକୃତରେ ହରିଶ୍ଚନ୍ଦ୍ରଙ୍କଦ୍ୱାରା ପ୍ରତାରିତ ହୋଇଛନ୍ତି, ଏହା ଜାଣିବାକୁ ଆଉ ବାକି ରହିଲା ନାହିଁ । ତହୁଁ ସ୍ୱୀୟ ଅଖଣ୍ଡ ଶକ୍ତିବଳରେ ସେ ରାଜାଙ୍କ ଦେହରେ 'ଜଳୋଦରୀ' ବ୍ୟାଧି ପ୍ରବେଶ କରାଇଦେଲେ । ଫଳରେ ରାଜାଙ୍କର ପୂର୍ବଶ୍ରୀ କ୍ରମେ କ୍ରମେ ଅନ୍ତର୍ହିତ ହୋଇଗଲା । ତାଙ୍କର ରୂପ ବିବର୍ଣ୍ଣ ଦିଶିଲା, ଉକ୍ତର ସତ୍ତା ସୁଦ୍ଧା ରହିଲା ନାହିଁ, ଉଦରଟି ବୃଦ୍ଧିପ୍ରାପ୍ତ ହୋଇ ଅତି କଦାକାର ଦେଖାଗଲା ।

—ଗ—

ହର୍ଷ ଚଳେ ଯଳେ ବିଷାଦର ଘନ ଗ୍ଲୁସ୍ମ......

ହରିଶ୍ଚନ୍ଦ୍ରଙ୍କର ଏ ଆକସ୍ମିକ ରୋଗ କଥା ଗୃହଆଡେ ପ୍ରଚାରିତ ହୋଇଗଲା । ନଅରଠାରୁ ଆରମ୍ଭ କରି ରାଜ୍ୟସାରା ସର୍ବତ୍ର ଏହି ଦୁଃସମ୍ବାଦ ଶୁଣି ଲୋକେ ଅତ୍ୟନ୍ତ ମର୍ମାହତ ହେଲେ । ବନରେ ଥାଇ ରୋହିତ ମଧ୍ୟ ପିତାଙ୍କ ଭୀଷଣ ବ୍ୟାଧି ବିଷୟ ଶୁଣିବାକୁ ପାଇଲେ । ତାହାଙ୍କୁ ବଳିରୂପେ ନ ପାଇବାରୁ ବରୁଣଦେବ କ୍ରୋଧିତ ହୋଇ ପିତାଙ୍କୁ ବ୍ୟାଧିଗ୍ରସ୍ତ କରିଛନ୍ତି, ଏହା ଜାଣି ରୋହିତ ନିଜର ମତ ପରିବର୍ତ୍ତନ କରି ରାଜବାଟୀକୁ ତୁରନ୍ତ ଫେରିଯିବାପାଇଁ ବାହାରିଲେ । କାରଣ ପିତାଙ୍କର ସତ୍ୟରକ୍ଷା ହେଲେ ରୋଗ ତାଙ୍କ ଦେହରୁ ବଳେ ବଳେ ଅପସରି ଯିବ ।

ଏପରି ଗୋଟିଏ ସୁଶ୍ରୀ ବୀର ରାଜପୁତ୍ର ବଳି ପଡ଼ି ପ୍ରାଣଦାନ କରିବା ଅନୁଚିତ ଭାବି ସ୍ୱର୍ଗରାଜ ଇନ୍ଦ୍ର ଏକ ବୃଦ୍ଧ ବ୍ୟକ୍ତିର ରୂପ ଧାରଣ କରି ଗୃହାଭିମୁଖୀ ରୋହିତଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ । ରୋହିତଙ୍କୁ ସେ ସମ୍ବୋଧନ କରି କହିଲେ :

"ହେ ଯୁବକ ! ବେଦ ମତରେ ଉଦ୍‌ଯୋଗୀ ଲୋକ ହିଁ ଲକ୍ଷ୍ମୀଙ୍କର ଅନୁଗ୍ରହ ଲାଭ କରେ । ଯେ କେବଳ ଗୃହରେ ବସିରହି ଆଳସ୍ୟରେ ଜୀବନ କଟାଏ, ଲକ୍ଷ୍ମୀ ତାହାଠାରୁ ବହୁ ଦୂରକୁ ଚାଲି ଯାଆନ୍ତି । ତେଣୁ ତୁମେ ନବର ପ୍ରତ୍ୟାବର୍ତ୍ତନର କଳ୍ପନା ଛାଡ଼ି ବର୍ତ୍ତମାନ ପରି ବିଦେଶରେ ସଞ୍ଚରଣ କର । ତାହାହେଲେ ଭାଗ୍ୟଦେବୀ ତୁମ ପ୍ରତି ନିଶ୍ଚୟ ପ୍ରସନ୍ନ ହେବେ ।"

ରୋହିତ ବୃଦ୍ଧବେଶୀ ଇନ୍ଦ୍ରଙ୍କ ଉପଦେଶ ମାନି ବନକୁ ଲେଉଟି ଗଲେ । କିଛିଦିନ ଅରଣ୍ୟରେ ଅବସ୍ଥାନ କଲାପରେ ପୁଣି

ପିତାଙ୍କ ବ୍ୟାଧିକଥା ତାଙ୍କ ମନରେ ଘୋର ଯାତନା ସୃଷ୍ଟି କଲା । ସେ ଉତ୍କଣ୍ଠିତ ହୋଇ ରଜପୃଷ୍ଠ ଅଭିମୁଖରେ ବାହାରିଲେ । ପଥମଧ୍ୟରେ ଭାବିଲେ :

"ବଳିପାଇଁ ପ୍ରତିନିଧି ଦେବାର ବ୍ୟବସ୍ଥା ବେଦରେ ଅଛି; ତେଣୁ ମୁଁ ଯଦି ମୋ ପରିବର୍ତ୍ତରେ ଆଜି ଗୋଟିଏ ବାଳକକୁ ବଳି-ପାଇଁ ଆୟୋଜନ କରିଦେଇପାରେ, ତାହାହେଲେ ସବୁ ଅସୁବିଧା ଅନାୟାସରେ ଅପସାରିତ ହେବ । ଏହାଦ୍ୱାରା ବରୁଣ ସନ୍ତୁଷ୍ଟ ହେବେ, ପିତାଙ୍କର ବ୍ୟାଧି ଦୂର ହୋଇଯିବ ଏବଂ ମୋର ମଧ୍ୟ ପ୍ରାଣରକ୍ଷା ହୋଇପାରିବ ।"

ଏହିପରି ଭାବ ଗତି କରୁ କରୁ ସନ୍ଧ୍ୟାକାଳ ଆସନ୍ନ ହୋଇଗଲା । ସୂର୍ଯ୍ୟଦେବ ନିଜର ଅଜସ୍ର ରଶ୍ମିଧାରକୁ ସଙ୍କୁଚିତ କରିନେଇ ଧୀରେ ଧୀରେ ପଶ୍ଚିମ ଦିଗ୍‌ବଳୟ ତଳେ ଆତ୍ମଗୋପନ କଲେ । ଏଣିକି ଗଭୀର ନିବିଡ଼ ଅନ୍ଧକାର ଚତୁର୍ଦ୍ଦିଗରୁ ଘୋଟିଆସିବ । ତେଣୁ ରୋହିତ ଆଶ୍ରୟସ୍ଥଳଟିଏ ପାଇବାପାଇଁ ଇତସ୍ତତଃ ଦୃଷ୍ଟି ସଞ୍ଚାଳନ କଲେ ।

ଅଳ୍ପ ପଥ ଅତିକ୍ରାନ୍ତ ହେଲାପରେ ଗୋଟିଏ ଜୀର୍ଣ୍ଣ କୁଟୀର ରୋହିତଙ୍କର ନେତ୍ରପଥାରୂଢ଼ ହେଲା । ସେ ସେଠାକୁ ଯାଇ ଏକ କରୁଣ ଦୃଶ୍ୟ ଦେଖିବାକୁ ପାଇଲେ । କୁଟୀର ମଧ୍ୟରେ ପାଞ୍ଚଜଣ-ବିଶିଷ୍ଟ ଦରିଦ୍ର ବ୍ରାହ୍ମଣପରିବାରଟି—ବ୍ରାହ୍ମଣ, ବ୍ରାହ୍ମଣୀ ଓ ତାଙ୍କର ତିନୋଟି ପୁତ୍ର । ପିତାର ନାମ ଅଜୀଗର୍ତ୍ତ ଏବଂ ତିନି ପୁତ୍ରଙ୍କର ନାମ ଯଥାକ୍ରମେ ଶୁନଃପୁଚ୍ଛ, ଶୁନଃଶେଫ, ଶୁନଃଲାଙ୍ଗୁଳ । ଖାଦ୍ୟାଭାବରୁ ସମଗ୍ର ପରିବାରଟି କେତେଦିନ ହେଲା ଉପବାସରେ ପଡ଼ିରହିଥାନ୍ତି ।

କ୍ଷୁଧାରେ ସମସ୍ତଙ୍କର ପ୍ରାଣ ବ୍ୟାକୁଳ, ଦେହ ଅବଶ । ସେମାନଙ୍କୁ ସେହି ନିର୍ଜନ କାନ୍ତାରରେ ସାହାଯ୍ୟ ଦେବାପାଇଁ ମଧ୍ୟ କେହି ନାହାନ୍ତି ।

ରୋହିତଙ୍କୁ ଦେଖିବାରୁ ସେମାନଙ୍କ ମନରେ ଟିକଏ ଦମ୍ଭ ଆସିଲା, କ୍ଷୀଣ ଆଶାର ସଞ୍ଚାର ହେଲା । ରୋହିତ ମଧ୍ୟ ସେମାନଙ୍କର କିଛି ଉପକାର କରିବା ସଙ୍ଗେ ସଙ୍ଗେ ନିଜର ଅଭିଳାଷ ପୂର୍ତ୍ତି କରିବେ ବୋଲି ଇଚ୍ଛା କଲେ । ଶେଷରେ ସେ ସ୍ୱୀୟ ପରିଚୟ ଦେଇ ବ୍ରାହ୍ମଣୀଙ୍କ ନିକଟରେ ପ୍ରସ୍ତାବ ଆଗତ କଲେ ।

"ମୋ ପରିବର୍ତ୍ତରେ ବଳି ପଡ଼ିବାପାଇଁ ଗୋଟିଏ ବାଳକ ଆବଶ୍ୟକ । ଯଦି ତୁମର ତିନି ପୁତ୍ର ମଧ୍ୟରୁ ଜଣକୁ ଏହି ଉଦ୍ଦେଶ୍ୟରେ ଦେଇପାରିବ, ତାହାଲେ ମୁଁ ତୁମକୁ ଶହେଟି ଦୁଗ୍‌ଧବତୀ ଧେନୁ ପ୍ରଦାନ କରିବି । ସେହି ଧେନୁଙ୍କ ଯୋଗେ ତୁମ ସମସ୍ତଙ୍କର ଦାରିଦ୍ର୍ୟ ତଥା କ୍ଷୁଧା-ଉପବାସର କଷ୍ଟ ଚିରଦିନ ପାଇଁ ଦୂରେଇଯାଇପାରିବ । ଏବେ ବିଚାର କରି ତୁମର ମତ ସରଳ ହୃଦୟରେ ବ୍ୟକ୍ତ କର ।"

ଏକ ଦିଗରେ ସନ୍ତାନର ଅତୁଳ ମାୟା, ଅନ୍ୟ ଦିଗରେ ଅସହ୍ୟ ଜଠର ଜ୍ୱାଳା । ବିଷମ ସମସ୍ୟାରେ ପଡି ବ୍ରାହ୍ମଣଦମ୍ପତି କିଛି ସମୟ ନୀରବ ରହିଲେ । ଜାଣି ଜାଣି ସନ୍ତାନକୁ ବଳିମୁହଁକୁ ଠେଲିଦେବାପାଇଁ କେଉଁ ପିତାମାତା ସହଜରେ ଇଚ୍ଛା କରିବେ ? ମାତ୍ର ଉଦରର ତାଡନା ଦୁନିଆରେ ସବୁଠାରୁ ପ୍ରବଳ । ସେହି ତାଡ଼ନାରେ ମନୁଷ୍ୟର ବୁଦ୍ଧି, ବୃତ୍ତି, ବିବେକ ସମସ୍ତ ହଜିଯାଏ । ଭଲମନ୍ଦ ବିଚାରର କ୍ଷମତା ଲୋପ ପାଏ । ମନୁଷ୍ୟ ନିଜର ଇଚ୍ଛା-ବିରୁଦ୍ଧରେ କାର୍ଯ୍ୟ କରିବାକୁ ସେତେବେଳେ ବାଧ୍ୟ ହୁଏ ।

ଏଠାରେ ଠିକ୍ ତାହାହିଁ ଘଟିଲା । ବ୍ରାହ୍ମଣ-ବ୍ରାହ୍ମଣୀ ପରିବାରଟିର ଜୀବନରକ୍ଷାପାଇଁ ତିନି ପୁତ୍ରଙ୍କ ମଧ୍ୟରୁ ଗୋଟିକର

ମୋହ ଚିରକାଳପାଇଁ ତୁଟାଇଦେବାକୁ ସ୍ଥିର କରି ଶେଷରେ ଅତି ନିର୍ମମ ପ୍ରାଣରେ ରୋହିତଙ୍କ ପ୍ରସ୍ତାବରେ ସମ୍ମତ ହେଲେ । ମାତ୍ର କେଉଁ ପୁତ୍ର ରୋହିତ ସଙ୍ଗରେ ଯିବ, ତାହାହିଁ କେବଳ ସ୍ଥିର ହେବାକୁ ବାକି ରହିଲା ।

ଶୁନଃପୁଛ ଜ୍ୟେଷ୍ଠପୁତ୍ର ବୋଲି ବ୍ରାହ୍ମଣ ତାକୁ ପାଖରେ ରଖିବାକୁ ଇଚ୍ଛା କଲେ । ଶୁନଃଲାଙ୍ଗୁଳ କନିଷ୍ଠପୁତ୍ର ହୋଇଥିବାରୁ ବତ୍ସଳା ମାତା ତାକୁ ପରିତ୍ୟାଗ କରିବାପାଇଁ ଅସମ୍ମତ ହେଲେ । ତେଣୁ ମଧ୍ୟମପୁତ୍ର ଶୁନଃଶେଫ ସ୍ୱତଃପ୍ରବୃତ୍ତ ହୋଇ ପିତା, ମାତା ଓ ଦୁଇ ଭ୍ରାତାଙ୍କଠାରୁ ବିଦାୟ ନେଇ ରୋହିତଙ୍କର ଅନୁସରଣ କରି-ବାକୁ ବାହାରିଲା । ରୋହିତ ଯଥା ସମୟରେ ସେହି ନିଃସ୍ୱ ବ୍ରାହ୍ମଣ ପରିବାରକୁ ଏକଶତ ଦୁଗ୍ଧବତୀ ଗାଈ ଦେଇ ନିଜର ପ୍ରତିଜ୍ଞା ରକ୍ଷା କଲେ ।

—୪—

କେତୋଟି ଦିନପରେ……

ରାଜପୁତ୍ର ରୋହିତ ଏବେ ଶୁନଃଶେଫ ସହିତ ରାଜପୁରୀରେ ଯାଇ ଉପସ୍ଥିତ ହେଲେ । ଶଯ୍ୟାଶାୟୀ ପିତାଙ୍କ ନିକଟକୁ ଧାଇଁଯାଇ ସେ ତାଙ୍କର ଚରଣ ସ୍ପର୍ଶ କରି ପ୍ରଣିପାତ କଲେ । ଏତେ କାଳ-ପରେ ପ୍ରାଣଧିକ ପୁତ୍ରକୁ ଫେରିପାଇବାରୁ ହରିଶ୍ଚନ୍ଦ୍ରଙ୍କ ବକ୍ଷ ବିପୁଳ ଆନନ୍ଦରେ ସ୍ଫୀତ ହୋଇଗଲା ।

ତତ୍ପରେ ରୋହିତ ତାଙ୍କ ପ୍ରତିନିଧିରୂପେ ଶୁନଃଶେଫକୁ ବଳୀପାଇଁ ଆଣିଥିବା କଥା ପିତାଙ୍କୁ ନିବେଦନ କଲେ । ତାହା ଶୁଣି ହରିଶ୍ଚନ୍ଦ୍ରଙ୍କ ପ୍ରାଣରେ ଆଶ୍ୱସ୍ତିର ତରଙ୍ଗ ଖେଳିଗଲା । ସେ ପୁତ୍ରର ବିବେକବୁଦ୍ଧିର ବିଚକ୍ଷଣତା ଦେଖି ବିସ୍ମିତ ହୋଇଗଲେ ।

ଏବେ ହରିଶ୍ଚନ୍ଦ୍ର ବରୁଣଙ୍କ ନିକଟରେ ନୂତନ ପ୍ରସ୍ତାବ ଦେଇ କହିଲେ :

"ପ୍ରଭୁ ! ରାଜକୁମାର ରୋହିତର ବଦଳରେ ଆପଣ ବ୍ରାହ୍ମଣକୁମାର ଶୁନଃଶେଫଙ୍କୁ ବଳିରୂପେ ଗ୍ରହଣ କରି ମୋତେ ଆସନ୍ନ ପୁତ୍ରଶୋକରୁ ତ୍ରାଣ କରନ୍ତୁ ।"

ଏଥିରେ ବରୁଣଙ୍କର ଆପତ୍ତି କରିବାର କୌଣସି କାରଣ ରହିଲା ନାହିଁ; ବରଂ କ୍ଷତ୍ରିୟବଳି ପରିବର୍ତ୍ତେ ବ୍ରାହ୍ମଣବଳି ପାଇବେ ବୋଲି ସେ ଅଧିକ ସୁଖୀ ହେଲେ ।

ବରୁଣଦେବତାଙ୍କଠାରୁ ସମ୍ମତି ପାଇ ରାଜା ହରିଶ୍ଚନ୍ଦ୍ର ଯଜ୍ଞର ଆୟୋଜନରେ ଲାଗିପଡ଼ିଲେ । ଶେଷରେ ଚୈତ୍ର ପ୍ରତିପଦା ଦିନ ଯଜ୍ଞକର୍ମ ଆରମ୍ଭ ହେଲା । ବିଶ୍ୱାମିତ୍ର, ଜମଦଗ୍ନି, ଅଧ୍ୱର୍ଯ୍ୟ, ବଶିଷ୍ଠ ପ୍ରଭୃତି ବହୁ ବିଜ୍ଞ ମହର୍ଷି ନିମନ୍ତ୍ରିତ ହୋଇ ଯଜ୍ଞର ବିଭିନ୍ନ କାର୍ଯ୍ୟର ଦାୟିତ୍ୱ ଗ୍ରହଣ କଲେ । ଶୁନଃଶେଫର ପିତା ଅଜୀଗର୍ତ୍ତ ମଧ୍ୟ ରାଜାନୁରୋଧରେ ଯଜ୍ଞସ୍ଥଳୀରେ ଉପସ୍ଥିତ ହେଲେ ।

ଯଜ୍ଞକାର୍ଯ୍ୟ ଯଥାରୀତି ଅଗ୍ରସର ହେଲା । ପ୍ରଚୁର ସମିଧ ଓ ଘୃତାହୁତି ପାଇ କୁଣ୍ଡଗର୍ଭରେ ଅଗ୍ନିଦେବ ପ୍ରଦୀପ୍ତ ହୋଇଉଠିଲେ । ତାଙ୍କର ବର୍ଦ୍ଧିତ ରକ୍ତ ଶିଖାମାନ ଊର୍ଦ୍ଧ୍ୱକୁ ଉଠି ବାୟୁମଣ୍ଡଳରେ ସ୍ନିଗ୍ଧ ସୌରଭ ବିସ୍ତାର କରିଦେଲା । ଯଜ୍ଞଧୂମର କୁଣ୍ଡଳୀରେ ଆକାଶବକ୍ଷ ପରିଶୋଭିତ ହେବାକୁ ଲାଗିଲା ।

ତେଣେ ପାର୍ଶ୍ୱମଣ୍ଡପରେ ରକ୍ତଚନ୍ଦନ ଓ ରକ୍ତପୁଷ୍ପମାଲ୍ୟରେ ସୁସଜ୍ଜିତ ହୋଇ ହତଭାଗ୍ୟ ଶୁନଃଶେଫ ନିଜର ଆତ୍ମୋତ୍ସର୍ଗ କଥା ଚିନ୍ତା କରୁଥାଏ । ଏହି ସମୟରେ ମହର୍ଷି ଜମଦଗ୍ନି କୁଶଯୁକ୍ତ ଅଶ୍ୱତ୍ଥଶାଖାକୁ ମନ୍ତ୍ରପୂତ କରି ଶୁନଃଶେଫ ଦେହରେ ସ୍ପର୍ଶ

କରାଇଦେଲେ । ଏହାପରେ ଶୁନଃଶେଫଙ୍କର କଟି, ଶିର ଓ ପାଦ ବନ୍ଧନ କରି ତାହାକୁ ଯୂପକାଷ୍ଠରେ ଆବଦ୍ଧ କରିବାର କଥା, ମାତ୍ର ସେଭଳି ହୃଦୟହୀନ ନିଷ୍ଠୁର କର୍ମ କରିବାକୁ ଜମଦଗ୍ନିଙ୍କ ହସ୍ତ ଆଦୌ ଚଳିଲା ନାହିଁ । ସେ ତହିଁରୁ ନିବୃତ୍ତ ହେଲେ ।

ଏହା ଦେଖି ହରିଶ୍ଚନ୍ଦ୍ରଙ୍କ ନିର୍ଦ୍ଦେଶକ୍ରମେ ମହର୍ଷି ବଶିଷ୍ଠ ଅଜୀଗର୍ତ୍ତଙ୍କୁ ଉକ୍ତ କାର୍ଯ୍ୟ କରିବାପାଇଁ ଆଦେଶ କଲେ । ଅଜୀଗର୍ତ୍ତ ପିତା ହୋଇ ମଧ୍ୟ ପୁତ୍ରକୁ ଯଥାରୀତି ପାଶବଦ୍ଧ କରି ଯୂପସ୍ତମ୍ଭରେ ନେଇ ବନ୍ଧନ କଲେ ଏବଂ ସେହି ନୃଶଂସ କର୍ମପାଇଁ ଶତସଂଖ୍ୟକ ଗାଭୀ ଦକ୍ଷିଣା ପାଇଲେ ।

ଶୁନଃଶେଫ ସେହି ଅର୍ଗଳ ମଧ୍ୟରେ ଥାଇ ନିଜ ଶିରଚ୍ଛେଦର ଭୟାବହ ମୁହୂର୍ତ୍ତକୁ କାତର ପ୍ରାଣରେ ଅପେକ୍ଷା କରି ରହିଲା । ମହର୍ଷି ଅଧ୍ୱର୍ଯ୍ୟ ଆସି ତାହାର ମସ୍ତକରେ ମନ୍ତ୍ରବାରି ସିଞ୍ଚିଦେଇଗଲେ । ଏଥର ବଳି ପଡ଼ିବାର ସମୟ ସମାଗତ; ମାତ୍ର କେହି ଉକ୍ତ ନିର୍ମମ କର୍ମ କରିବାକୁ ସ୍ୱୀକୃତ ନ ହେବାରୁ ଶେଷରେ ସେହି ଭାର ପଡ଼ିଲା ଅଜୀଗର୍ତ୍ତଙ୍କ ଉପରେ । ରାଜାଜ୍ଞା ପ୍ରତି ଅସମ୍ମାନ ପ୍ରଦର୍ଶନ କରିବାର ଦୁଃସାହସ ତାଙ୍କଠାରେ କି କେବେହେଲେ ସମ୍ଭବ ହୋଇପାରେ !

ପିତାଙ୍କ ହସ୍ତରେ ରକ୍ତପିପାସୁ ଶାଣିତ ଖଡ୍ଗର ଲହଲହ ତୀକ୍ଷ୍ଣ ଧାର ଦେଖିଲାମାତ୍ରେ ଶୁନଃଶେଫ ନିଜର ଚୈତନ୍ୟ ହଜିଗଲା ପରି ବୋଧ କଲା । ସେ ହତାଶ ହୋଇ ଅଶ୍ରୁସଜଳ ଚକ୍ଷୁରେ ଅତି କରୁଣ ଭାଷାରେ ବ୍ରହ୍ମା, ଅଗ୍ନି, ଇନ୍ଦ୍ର, ବରୁଣ ପ୍ରଭୃତି ଦେବତାଙ୍କୁ ସ୍ତୁତି କରିବାକୁ ଲାଗିଲା ।

ଅସହାୟ ବାଳକଟିର କାତର ପ୍ରାର୍ଥନାରେ ବରୁଣଦେବଙ୍କ ହୃଦୟ ସହସା ଦୋହଲି ଉଠିଲା । ସେ ତାଙ୍କର ଦିବ୍ୟମୂର୍ତ୍ତି ଘେନି

ଶୁନଃଶେଫ ଆଗରେ ଆସି ଆବିର୍ଭୂତ ହେଲେ । ସମଗ୍ର ଯଜ୍ଞମଣ୍ଡପ ଦୀପ୍ତ ଆଲୋକରେ ଉଦ୍‌ଭାସିତ ହୋଇଗଲା ।

ବରୁଣଙ୍କୁ ସମ୍ମୁଖରେ ଦେଖି ଶୁନଃଶେଫ ଭକ୍ତି ଗଦ୍‌ଗଦ କଣ୍ଠରେ ତାଙ୍କର ସ୍ତବ ଗାନ କରି ଏହିରୂପେ ଜୀବନ ଭିକ୍ଷା କଲା :

"ହେ ବିଶ୍ୱକର୍ମା ! ତୁମେ ମୋର ଶିର-ଫାଶକୁ ଊର୍ଦ୍ଧ୍ୱରୁ ବାହାର କରିନିଅ, କଟି-ଫାଶକୁ ଖୋଲି ଶିଥିଳ କରିଦିଅ ଏବଂ ପାଦ-ଫାଶକୁ ନିମ୍ନରୁ କାଟିନିଅ । କାରଣ ମୋ ଜୀବନର ଆଶା ଏହି ତିନୋଟି ଫାଶମଧ୍ୟରେ ପ୍ରଚ୍ଛନ୍ନ ରହିଛି ।"

ଭକ୍ତର ଆର୍ତ୍ତବାଣୀ କେବେହେଲେ ବ୍ୟର୍ଥ ହୁଏ ନାହିଁ । ଏ କ୍ଷେତ୍ରରେ ମଧ୍ୟ ତାହାହିଁ ହେଲା । ଗୃହୁଁ ଗୃହୁଁ ଶୁନଃଶେଫ-ଦେହରେ ବନ୍ଧାଯାଇଥିବା ସମସ୍ତ ରଜ୍ଜୁ ଟିକ୍ ଟିକ୍ ହୋଇ ତଳେ ଛିଣ୍ଡିପଡ଼ିଲା । ଦର୍ଶକମଣ୍ଡଳୀ ବରୁଣଦେବଙ୍କ ଜୟ-ଜୟ ଘୋଷରେ ଯଜ୍ଞସ୍ଥଳୀକୁ ମୁଖରିତ କରିଦେଲେ । ବରୁଣଦେବ ଏହି ଅବସରରେ ଯଜ୍ଞମଣ୍ଡପରୁ ଅନ୍ତର୍ହିତ ହୋଇଗଲେ ।

ବାଳକ ଶୁନଃଶେଫ ଏବେ ମୃତ୍ୟୁମୁଖରୁ ମୁକ୍ତ । ତେଣେ ହରିଶ୍ଚନ୍ଦ୍ରଙ୍କ ବ୍ୟାଧି ଦଣ୍ଡକମଧ୍ୟରେ ଲୁପ୍ତ । ବରୁଣଦେବ ସ୍ୱୟଂ ତୃପ୍ତ । ଏ ଅଦ୍ଭୁତ ଘଟଣାରେ ଯଜ୍ଞଭୂମି ନୀରବ, ଶାନ୍ତ ।

ରୋହିତଙ୍କ ପ୍ରାଣରେ ଅପୂର୍ବ ଆନନ୍ଦ !

———

# ଇନ୍ଦ୍ର ଉପାସନାର ଫଳ

## ( ବେଦ ଗଳ୍ପ )

—୧—

ସନ୍ତାନହୀନ ମହର୍ଷି ଅତ୍ରି... ...

ବିବାହର ବହୁ ବର୍ଷ ପର୍ଯ୍ୟନ୍ତ ଅତ୍ରିଙ୍କର କୌଣସି ସନ୍ତାନ-ସନ୍ତତି ହେଲା ନାହିଁ । ସେ ବଡ଼ ବ୍ୟଥିତ ମନରେ ଦିନ ଯାପନ କରୁଥାନ୍ତି । ଅବଶେଷରେ ଭଗବାନଙ୍କର ତାଙ୍କ ପ୍ରତି କୃପାଦୃଷ୍ଟି ପଡ଼ିଲା । ପ୍ରଥମ ସନ୍ତତିରୂପେ କନ୍ୟାଟିଏ ଜନ୍ମଲଭ କରି ମହର୍ଷିଙ୍କ କୁଟୀରକୁ ପ୍ରଥମ କ୍ରନ୍ଦନସ୍ୱରରେ ମୁଖରିତ କଲା ।

ଏତେ କାଳେ ମହର୍ଷିଙ୍କ ମନରୁ ନିରାଶାର ଘନ ଅନ୍ଧକାର ଅପସାରିତ ହେଲା । ତାଙ୍କର ପ୍ରାଣ ସୁଖ-ସୂର୍ଯ୍ୟର ଉଜ୍ଜ୍ୱଳ କିରଣରେ ହସିଉଠିଲା । ସମଗ୍ର ଆଶ୍ରମରେ ଆନନ୍ଦର ପ୍ରବଳ ସ୍ରୋତ ବହିଗଲା । ଅତ୍ରି ସେହି କନ୍ୟାଟିର ନାମ ରଖିଲେ 'ଅପାଲା' ।

ଅପାଲା ଦିନକୁ ଦିନ ଶଶିକଳା ପରି ବଢ଼ିବାକୁ ଲାଗିଲା । ତାର ଅପରୂପ ରୂପଶ୍ରୀ ଓ ଅନିନ୍ଦ୍ୟ ଗଠନମାଧୁରୀ ଦେଖି ଅତ୍ରିଙ୍କ ହୃଦୟ ଅପାର ସନ୍ତୋଷରେ ପୂରିଉଠିଲା । ଆଶ୍ରମବାସୀ ସମସ୍ତଙ୍କ ହସ୍ତରେ ଶିଶୁ ଅପାଳା ସ୍ୱର୍ଣ୍ଣପିତୁଳୀଟି ପରି ନୃତ୍ୟ କରିବାକୁ ଲାଗିଲା ।

କନ୍ୟାର ପଢ଼ିବା ବୟସ ହେବାରୁ ଅତ୍ରି ତାର ଶିକ୍ଷାଦିଗରେ ମନୋନିବେଶ କଲେ । ଆଶ୍ରମରେ ତରୁଲତା, ମୃଗଶିଶୁ ଓ ଋଷି ବାଳକଙ୍କ ମଧ୍ୟରେ ଅତି ସ୍ନେହ ଆଦରରେ ବଢି ଅପାଲା ଖୁବ୍

ମନ ଦେଇ ବିଦ୍ୟାଭ୍ୟାସ କଲା । ଅଳ୍ପ କେତୋଟି ବର୍ଷ ମଧ୍ୟରେ ସେ ସମ୍ପୂର୍ଣ୍ଣ ବେଦ କଣ୍ଠସ୍ଥ କରିପକାଇଲା । ପବିତ୍ର ସରସ୍ୱତୀ ନଦୀର ନିର୍ମଳ ତରଳ ଜଳଧାରା ପରି ତା ତୁଣ୍ଡରୁ ଯେତେବେଳେ ବେଦ ମନ୍ତ୍ରସବୁ ଅନର୍ଗଳ ବାହାରେ, ତାହା ଶୁଣି ସମସ୍ତେ ଅବାକ୍ ହୋଇଯାନ୍ତି । ସେହି ବାଲ୍ୟବୟସରୁ ତାର ଏପରି ପ୍ରତିଭାର ପରିଚୟ ପାଇ ଋଷି ନିଜକୁ ବଡ଼ ଭାଗ୍ୟବାନ୍ ମନେକଲେ ।

କ୍ରମେ ଅପାଲା ଯୌବନରେ ପଦାର୍ପଣ କଲା । ତାର ବିବାହ ବୟସ ମଧ୍ୟ ଉପସ୍ଥିତ ହେଲା । ଏଥିମଧ୍ୟରେ ଅପାଲାର ରୂପ-ସୌନ୍ଦର୍ଯ୍ୟ ଓ ଗୁଣ-ସୌନ୍ଦର୍ଯ୍ୟ ଉଭୟର ଖ୍ୟାତି ଆଶ୍ରମସୀମା ଅତିକ୍ରମ କରି ବହୁ ଦୂରକୁ ପ୍ରସାରିତ ହୋଇସାରିଥିଲା । ତେଣୁ ଅନେକ ସ୍ଥାନରୁ ତାର ବିବାହପାଇଁ ପ୍ରସ୍ତାବ ଆସିଲା । ବିବାହପ୍ରାର୍ଥୀମାନଙ୍କ ମଧ୍ୟରେ 'କୃଶାଶ୍ୱ' ନାମରେ ଜଣେ ବିଦ୍ୱାନ୍, ବଳିଷ୍ଠ ଓ ତେଜସ୍ୱୀ ଯୁବକ ଥିଲେ । ଅତ୍ରି ତାହାଙ୍କୁ ନିଜର ଜାମାତା ପଦରେ ବରଣ କରିବାକୁ ମନେ ମନେ ନିଶ୍ଚୟ କଲେ । କୃଶାଶ୍ୱ ମଧ୍ୟ ଏହା ଜାଣିଲେ ଏବଂ ଅପାଳା ଭଳି ବିଦୁଷୀ ଓ ରୂପବତୀ ପତ୍ନୀ ପାଇବେ ବୋଲି ନିଜ ଜୀବନକୁ ଶ୍ଳାଘ୍ୟ ମନେ କଲେ ।

କିନ୍ତୁ ଦିନ ଗଲାପରେ ଅପାଲାର ଶରୀରରେ କେତୋଟି ଶ୍ୱେତ ଚିହ୍ନ ଦେଖା ଦେଲା । ତଦ୍ୱାରା ତାର କମନୀୟ ରୂପ କ୍ରମେ ମଳିନ ପଡ଼ିଲା । ତାହା ଦେଖି ପିତା ଦୁଃଖରେ ହାୟ-ହାୟ କରିବାକୁ ଲାଗିଲେ । ତାଙ୍କ ମନର ସମସ୍ତ ସୁଖ କେଉଁଆଡ଼େ ତିରୋହିତ ହୋଇଗଲା । କିପରି କନ୍ୟାଦେହରୁ ଉକ୍ତ ବିଷମ ରୋଗ ଚାଲିଯିବ, ଏଥିପାଇଁ ସେ ନାନା ପ୍ରତିକାର କଲେ । ବିଶେଷଜ୍ଞ ବୈଦ୍ୟ ଡକାଇ ଚିକିତ୍ସା କରାଇଲେ । ତାହାଙ୍କ ନିର୍ଦ୍ଦେଶମତେ

ଅପାଲା ଔଷଧ ସେବନ କଲା । ଅତ୍ରି ମଧ୍ୟ ସେହି ଛତଚିହ୍ନଉପରେ ଏକପ୍ରକାର ତୈଳ ମାଲିସ କଲେ ଓ ପ୍ରଲେପ ଲଗାଇଲେ, ମାତ୍ର କାହିଁରେ କିଛି ଫଳ ହେଲା ନାହିଁ । ବୈଦ୍ୟଙ୍କର ସମସ୍ତ ଯତ୍ନ ବିଫଳ ହେଲା । ଅତ୍ରି ହତାଶ ହୋଇପଡ଼ିଲେ ।

ଏଥିମଧ୍ୟରେ କୃଶାଶ୍ୱଙ୍କ ପିତାମାତା ଶୀଘ୍ର ବିବାହକାର୍ଯ୍ୟ ସମ୍ପାଦନ କରିବାକୁ ବାରମ୍ବାର ଅତ୍ରିଙ୍କୁ ଅନୁରୋଧ କରୁଥାନ୍ତି । ସେହି ଅନୁରୋଧର ତାଡ଼ନାଫଳରେ ଅତ୍ରି ଆଉ ବିଳମ୍ବ କରି ପାରିଲେ ନାହିଁ । ଶେଷରେ କୃଶାଶ୍ୱଙ୍କ ସହିତ ଅପାଲାର ପରିଣୟ ଯଥାବିଧି ସମାହିତ ହେଲା । ଅପାଲା ପିତାଙ୍କ ଆଶ୍ରମ ଛାଡ଼ି ସ୍ୱାମୀଗୃହକୁ ଯାତ୍ରା କଲା । ସେଠାରେ ବୃଦ୍ଧା ଶ୍ୱଶ୍ରୂ ଓ ବୃଦ୍ଧ ଶ୍ୱଶୁରଙ୍କର ସେବାପରିଚର୍ଯ୍ୟା କରି ଏବଂ ସ୍ୱାମୀଙ୍କର ସମସ୍ତ ତତ୍ତ୍ୱ ନେଇ ସେ ମନରେ ଅସୀମ ଆନନ୍ଦ ଉପଭୋଗ କଲା । ଗୁରୁଜନମାନଙ୍କ ପ୍ରତି ପ୍ରଗାଢ଼ ଭକ୍ତି, ଗୃହସ୍ଥାଳୀର ସୁପରିଚାଳନା ଓ ମାର୍ଜିତ ବିବେକବୁଦ୍ଧି, ଅପାଲାର ଏହିସବୁ ସଦ୍‌ଗୁଣ ଦେଖି ପ୍ରତିବେଶୀମାନେ ତାହାକୁ ଉଚ୍ଚପ୍ରଶଂସା କରିବାକୁ ଲାଗିଲେ ।

ମାତ୍ର ଅଳ୍ପ କିଛି କାଳପରେ ଅପାଲାର ଜୀବନଉପରକୁ ଘୋର ଦୁର୍ଦ୍ଦିନର ବିଭୀଷିକା ମାଡ଼ିଆସିଲା । ତା ଦେହର ବିଭିନ୍ନ ଅଙ୍ଗରେ ଛତସବୁ ବଡ଼ ଆକାରରେ ପ୍ରକାଶ ପାଇଲା । ତାହା ଦେଖି କୃଶାଶ୍ୱ ଅପାଲାକୁ ଘୃଣା କରିବାକୁ ଆରମ୍ଭ କଲେ । ହତଭାଗୀ ଅପାଲା ସ୍ୱାମୀର ପୂର୍ବସ୍ନେହରୁ ପୂର୍ଣ୍ଣରୂପେ ବଞ୍ଚିତ ହେଲେ । ଶ୍ୱଶ୍ରୂ, ଶ୍ୱଶୁର, ପ୍ରତିବେଶୀ ଏମିତିକି କେହି ତାକୁ ସୁଖ ପାଇଲେ ନାହିଁ । ଅପାଲା ସମସ୍ତଙ୍କ ଚକ୍ଷୁରେ ଘୃଣ୍ୟ ବିବେଚିତ ହେଲା । କୌଣସି ବ୍ୟକ୍ତି ତାକୁ ପାଖରେ ବସାଇବାକୁ ସୁଦ୍ଧା ଇଚ୍ଛା କଲେ ନାହିଁ ।

—୨—

ନିପ୍ଠୁରର ଶିବ୍ର ଅଭିଶାପ……

ଅପାଳା ଦୁଃଖର ନିର୍ମମ କଷାଘାତରେ ଜର୍ଜ୍ଜରିତ ହେବାକୁ ଲଗିଲା । ସେ ଏକାବେଳକେ ଶତ୍ରୁରେ ନିଜର ନିର୍ଜନ ପ୍ରକୋଷ୍ଠରେ ଏକାକୀ ବସି ନୀରବରେ ସମସ୍ତ କଟାଇଲା । କେବଳ ଭଗବାନଙ୍କ ଛଡ଼ା ତାର ଦୁଃଖ ବୁଝିବାପାଇଁ ଆଉ କେହି ରହିଲେ ନାହିଁ । ପଦେ ମିଷ୍ଟ ବଚନ ବା ଆଶ୍ୱାସନାର ବାଣୀ କାହା ଠାରୁ ଶୁଣିବାର ଭାଗ୍ୟ ମଧ୍ୟ ରହିଲା ନାହିଁ । ଯାହାର ଚରଣତଳେ ନିଜ ଜୀବନକୁ ସେ ସମର୍ପଣ କରିଦେଇଥିଲେ, ସେହି ସ୍ୱାମୀ ତ ତାକୁ ପଚ୍ଛରିଲେ ନାହିଁ, ଆଉ କାହାଠାରୁ ଅବା ସେ କଣ ଆଶା କରିବ ?

କ୍ରମଶଃ ଅପାଳାର ଦୁଃଖ ଅସହ୍ୟ ହୋଇଉଠିଲା । ସେ ସ୍ତମ୍ଭିତ ପାଷାଣ ଭଳି ବହୁ କାଳ ଧୈର୍ଯ୍ୟଧରି ରହିଲା; ମାତ୍ର ଶେଷରେ ତାର ସେହି ଧୈର୍ଯ୍ୟ-ବନ୍ଧ ମଧ୍ୟ ଭାଙ୍ଗିଗଲା । ଏଣିକି ଜୀବନ ତାକୁ ନିତାନ୍ତ ଦୁଃସହ ବୋଧ ହେଲା । ସଂସାରରେ ଏଭଳି ବ୍ୟର୍ଥ ଜୀବନ ଧରି ହୀନ କୀଟକୃମି ପରି ପଡ଼ିରହିବାରେ କି ଲାଭ ? ଅଦୃଷ୍ଟକୁ ନିନ୍ଦା କରି ସେ ବହୁତ ବିଳାପ କଲା । କୋହ ସମ୍ଭାଳି ନ ପାରି ଶେଷରେ ଦିନେ ସ୍ୱାମୀପାଖକୁ ଯାଇ ଖୁବ୍ ସାହସରେ ସବିନୟ କହିଲା :

"ପ୍ରଭୁ ! ମୋତେ ପାଦସେବାରୁ ଦୂରରେ ରଖିଛ କାହିଁକି ? ମୋର ନାରୀଜନ୍ମ ତଦ୍ଦ୍ୱାରା ବିଫଳ ହେଉ ନାହିଁ କି ? ମୋର ଦେହର ଏହି ରୋଗପାଇଁ ତୁମେ ଯେ ମୋତେ ଘୃଣା କରୁଛ, ଏହା ମୁଁ ଭଲରୂପେ ଜାଣେ; କିନ୍ତୁ ମୋର ସତୀତ୍ୱ, ପାତିବ୍ରତ୍ୟ, ବିଦ୍ୟବତ୍ତା

ଏସବୁର କ'ଣ କିଛି ମୂଲ୍ୟ ନାହିଁ ? ଏଗୁଡ଼ିକର ସଦୁପଯୋଗ କରାଇବା କଣ ତୁମର କର୍ତ୍ତବ୍ୟ ନୁହେଁ ?"

ପତ୍ନୀମୁଖରୁ ଏହି ଦପ୍ତମୟ ବାଣୀ ଶୁଣି କୃଶାଶ୍ୱ ବଡ଼ ଦୁଃଖିତ ହୋଇ ସରଳ ମନରେ ସ୍ପଷ୍ଟ କଥା କହିଲେ :

"ଅପାଲା ! ମନୁଷ୍ୟ ଚର୍ମହିଁ ସୌନ୍ଦର୍ଯ୍ୟର ଉଦ୍ବୋଧକ । ତାର ଚକ୍ଷୁ ସବୁବେଳେ ସୌନ୍ଦର୍ଯ୍ୟ ଲୋଡ଼େ । ଏହି ରୋଗଯୋଗୁ ତୁମର ରୂପକାନ୍ତି କ୍ରମଶଃ ବିକୃତ ହୋଇଯାଉଛି । ପୁଣି ଏ ରୋଗଟି ଏପରି ବିଭତ୍ସ ଯେ, ଏହା ସ୍ୱଭାବତଃ ମନରେ ଘୃଣାଭାବ ସୃଷ୍ଟି କରେ । ଏହି ଦୁଇ କାରଣରୁ ମୁଁ ସର୍ବଦା ତୁମଠାରୁ ଦୂରରେ ରହୁଛି । ତୁମଠାରେ ବହୁତ ସଦ୍‌ଗୁଣ ଅଛି, ଏଥିରେ କୌଣସି ମତଦ୍ୱୈଧ ନାହିଁ; ମାତ୍ର ଏହି ମାରାତ୍ମକ ବ୍ୟାଧିଟି ସେହିସବୁ ସଦ୍‌ଗୁଣର ମହତ୍ତ୍ୱକୁ ଏକାବେଳକେ ମୂଲ୍ୟହୀନ କରି ଦେଉଛି ।"

ସ୍ୱାମୀଙ୍କର ଏହି ଅପ୍ରିୟ ରୂକ୍ଷକଥାରେ ବିଚଳିତ ହୋଇପାଇ ଅପାଲା ନିର୍ଭୟ ଚିତ୍ତରେ ଉତ୍ତର ଦେଲା :

"ସ୍ୱାମୀ ! ଚନ୍ଦ୍ରଠାରେ କଳଙ୍କ ଥିଲେ ମଧ୍ୟ କେହି କ କେବେ ତାହାକୁ ଘୃଣା ବା ଅନାଦର କରେ ? ଗୁଣର ସମାଦର ଚିରକାଳ ରହିଛି ଓ ନିଶ୍ଚୟ ରହିବ । ଗୁଣ ନିକଟରେ ରୂପ ମଉଳିଥାଏ, କିନ୍ତୁ ରୂପ ନିକଟରେ କେବେହେଲେ ଗୁଣ ମଉଳେ ନାହିଁ । ମୋର ଏତେ ସଦଗୁଣ ଥିଲେହେଁ ରୂପର କ୍ଷୁର୍ଣ୍ଣତାପାଇଁ ତୁମେ ତାହାକୁ ଉପେକ୍ଷା କରୁଛ । ହେଉ, ସେଥିପାଇଁ ମୋର ଆଦୌ ଶୋଚନା ନାହିଁ । ତୁମେ ଥିଲ ମୋର ଏକମାତ୍ର ସହାୟ । ତୁମର ଉଦାସୀନତା ଓ ଘୃଣା ମୋର ଜୀବନପ୍ରତି ଏକ ଉତ୍କଟ ଧକ୍‌କା ଦେଇଛି । ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ନିଃସହାୟ—କେବଳ ପରମେଶ୍ୱରହିଁ ମୋର ଏକମାତ୍ର

ଭରସା । ତୁମଠାରୁ ବିଦାୟ ନେଇ ଆଜଠାରୁ ମୁଁ ମୋର ଗନ୍ତବ୍ୟ ମାର୍ଗର ଅନୁସନ୍ଧାନ କରିବି । ଆଶୀର୍ବାଦ କର, ମୋର ଯାତ୍ରା ସଫଳ ହେଉ; ମୁଁ ପୁଣି ତୁମ ପାଦସେବାର ଅଧିକାରିଣୀ ହୁଏ ।”

ଏହା କହି ଅପାଳା ଜଳଅଶ୍ରୁ ଲୋଚନରେ ସ୍ୱାମୀର ଚରଣ ଚୁମ୍ବନ କଲା ଏବଂ ପାଦରଜ ନେଇ ସେଠାରୁ ବିଦାୟ ନେଲା । କୃଶାଶ୍ୱ ନିର୍ବାକ୍ ହୋଇ ପତ୍ନୀର ପଥକୁ ନୀରବରେ ଗୁହାଁଇରହିଲେ ।

ଅପାଳାର ଦୃଢ଼ ବିଶ୍ୱାସ ହେଲା, ଯେଉଁ ବ୍ୟାଧି ମନୁଷ୍ୟର ଶକ୍ତିରେ ଆରୋଗ୍ୟ ହେବା ଅସମ୍ଭବ, ତାହା କେବଳ ଈଶ୍ୱରଙ୍କ ଶକ୍ତିରେହିଁ ସମ୍ଭବ । ଏକ ଲକ୍ଷ୍ୟରେ ଉପାସନା କରିପାରିଲେ ଯେତେ ଅସାଧ୍ୟ ରୋଗ ହେଲେ ମଧ୍ୟ ତାହା ନିଶ୍ଚୟ ଦୂର ହୋଇଯିବ ।

ଏହି ଦମ୍ଭ ନେଇ ଅପାଳା ପିତାଙ୍କ ଆଶ୍ରମକୁ ବାହାରିଲା । ସେହି ସ୍ଥାନଟି ଉପାସନା ପାଇଁ ଉତ୍କୃଷ୍ଟ ହେବ ବୋଲି ସେ ମନେ ମନେ ନିର୍ବାଚନ କରିନେଲା ।

— ୩ —

ଘରଝିଅ ପୁଣି ଘରେ·····

ମହର୍ଷି ଅତ୍ରି କନ୍ୟାକୁ ଦେଖି ଯେତିକି ସୁଖୀ ହେଲେ, ସେତିକି ମଧ୍ୟ ଦୁଃଖୀ ହେଲେ । ଅପାଳା ଦୈବୀଶକ୍ତିଉପରେ ପୂର୍ଣ୍ଣ ନିର୍ଭର ରଖିଥିବାରୁ ମହର୍ଷିଙ୍କର ଆଶା ହେଲା ଯେ, ଏଥର ତାର ବ୍ୟାଧି ନିରାକୃତ ହୋଇଯିବ । ଶ୍ୱଶ୍ରୂ, ଶ୍ୱଶୁର, ସ୍ୱାମୀ, ପ୍ରତିବାସୀ, ସମସ୍ତଙ୍କ ନିକଟରୁ କନ୍ୟା ଉପେକ୍ଷିତ ହୋଇଥିବାରୁ ତାଙ୍କ ପ୍ରାଣରେ ଘୋର ଆଘାତ ଆସିଲା ।

ଅପାଳା ଏବେ କଠିନ ପୂଜାବ୍ରତ ଆରମ୍ଭ କଲା । ସୂର୍ଯ୍ୟୋଦୟର ପ୍ରାକ୍‌କାଳଠାରୁ ପ୍ରଥମ ପ୍ରହରର ଶେଷପର୍ଯ୍ୟନ୍ତ ସେ ନିଶ୍ଚଳ ଧ୍ୟାନରେ

ବସିରହେ, ଦ୍ୱିତୀୟ ପ୍ରହରରେ ଘୃତାହୁତ ଦେଇ ଯବନ ମନରେ ହୋମ କରେ ଏବଂ ଅବଶିଷ୍ଟ ଛଅ ପ୍ରହରଯାକ କୁଶାସନରେ ବସି ନୀରବ ଉପାସନାରେ ନିବିଷ୍ଟ ରହେ । ଏହିରୂପେ ତାର ଅହୋରାତ୍ର ଅତିବାହିତ ହୁଏ । ଦେବରାଜ ଇନ୍ଦ୍ର ହିଁ ତାର ଉପାସ୍ୟ ଦେବତା । ତାଙ୍କରି କୃପା ହିଁ ତାର କାମ୍ୟ ।

କିଛି କାଳ ଅତିକ୍ରାନ୍ତ ହେଲାପରେ ଅପାଳା ଅଷ୍ଟପ୍ରହରଯାକ କେବଳ ହୋମକାର୍ଯ୍ୟରେ ବ୍ୟାପୃତ ରହିଲା । ମାର୍ତ୍ତଣ୍ଡର ପ୍ରଚଣ୍ଡ ରୌଦ୍ର, ଶଶାଙ୍କର ଶୀତାତପ, ମୂଷଳ ବୃଷ୍ଟିଧାରା, ଗାତ୍ରପ୍ରକମ୍ପନ, ପ୍ରବଳ ଶୈତ୍ୟ, କୌଣସି ହେଲେ ତାର ତପସ୍ୟାରେ ବାଧା ଜନ୍ମାଇ-ପାରିଲେ ନାହିଁ । ପରିଶେଷରେ ସେ ପାନାହାର ମଧ୍ୟ ବିସର୍ଜନ କଲା ।

ଏତେ ଦାରୁଣ କ୍ଳେଶ ସହ୍ୟ କରି ଉପାସନା କଲେ ମଧ୍ୟ ଏ ପର୍ଯ୍ୟନ୍ତ ଇନ୍ଦ୍ରଦେବ ପରିତୁଷ୍ଟ ହେଲେ ନାହିଁ କି ଅପାଳାକୁ ଦର୍ଶନ ଦେଲେ ନାହିଁ । ଏହା ଦେଖି ଅପାଳା ଜାଣିଲା, ନିଶ୍ଚୟ ତାର କାର୍ଯ୍ୟରେ କୌଣସି ତ୍ରୁଟି ରହିଯାଇଛି ।

ଇନ୍ଦ୍ରପୂଜାର ପ୍ରଧାନ ସାମଗ୍ରୀ ସୋମରସ । ତାହା ଅପାଳା-ପାଖରେ ନ ଥିଲା, ତେଣୁ ନୈବେଦ୍ୟରେ ତାହାକୁ ସେ ଅର୍ପଣ କରି ପାରୁ ନ ଥିଲା । ଏବେ ସେ ଏକ ବନ୍ୟଲତାରୁ ସୋମରସ ପ୍ରସ୍ତୁତ କରି ଇନ୍ଦ୍ରଙ୍କୁ ନୈବେଦ୍ୟରୂପେ ପ୍ରଦାନ କଲା । ତାହା ପାଇବାମାତ୍ରେ ଇନ୍ଦ୍ରଦେବଙ୍କ ମନରେ ପ୍ରସନ୍ନତା ଆସିଲା । ସେ ଏକ ଦିବ୍ୟ ରଥରେ ବସି ଅପାଳାସମ୍ମୁଖରେ ଆସି ଆବିର୍ଭୂତ ହେଲେ । ସମଗ୍ର ବନଭୂମି ତାଙ୍କ ସ୍ୱର୍ଗୀୟ ଦୀପ୍ତିରେ ସମୁଜ୍ଜ୍ୱଳ ହୋଇଉଠିଲା । ରଥରୁ ଅବତରଣ କରି ଶଚୀପତି କହିଲେ :

"ଅପାଲା ! ତୋର କଠୋର ସାଧନାରେ ପରିତୃପ୍ତ ହୋଇ ମୁଁ ତିନୋଟି ବର ତୋତେ ଦେବାପାଇଁ ମନସ୍ଥ କରିଛୁ । ଏବେ କହ, କେଉଁ କେଉଁ ବରରେ ତୋର ଅଭିଳାଷ ?



[ ଅପାଳାକୁ ଇନ୍ଦ୍ରଙ୍କର ବରଦାନ ]

ଅପାଲାର ଜୀବନ ସାର୍ଥକ ହେଲା । ସେ ଇନ୍ଦ୍ର ଦେବଙ୍କୁ ପ୍ରଣାମ କରିସାରି କରଯୋଡ଼ ନିବେଦନ କଲା :

"ପ୍ରଭୁ ! ମୋ ପିତାଙ୍କ ମସ୍ତକ କେଶଶୂନ୍ୟ ହୋଇଯାଇଛି । ଆପଣଙ୍କ ଆଶୀର୍ବାଦରେ ତାହା ପୁଣି କେଶମଣ୍ଡିତ ହେଉ ।"

ମଘବା ହସି ହସି କହିଲେ :

"ତାହାହିଁ ହେଉ । ଏବେ ଦ୍ୱିତୀୟ ବର ମାଗ ।"

ଅପାଲା ପ୍ରାର୍ଥନା କଲା :

"ମୋ ପିତାଙ୍କର ଦାରିଦ୍ର୍ୟ ଦୂର ହେଉ ।"

"ତଥାସ୍ତୁ" କହି ଇନ୍ଦ୍ରଦେବ ଶେଷ ବର ଯାଚନା କରିବାକୁ ନିର୍ଦ୍ଦେଶ ଦେଲେ ।

ଅପାଲା ତୃତୀୟ ବର ଭିକ୍ଷା କଲା :

"ପ୍ରଭୁ ! ମୋ ଅଙ୍ଗରୁ ଏହି ଛଉଚିହ୍ନଗୁଡ଼ିକ ଅଦୃଶ୍ୟ ହୋଇଯାଉ, ଶରୀର ସମ୍ପୂର୍ଣ୍ଣ ରୋଗମୁକ୍ତ ହେଉ ଏବଂ ମୋର ସ୍ୱାମୀ ପ୍ରଭୃତି ମୋପ୍ରତି ପୂର୍ବବତ୍ ସ୍ନେହଶ୍ରଦ୍ଧାଶୀଳ ହୁଅନ୍ତୁ ।

"ତୋର ଇଚ୍ଛା ଅଚିରେ ପୂର୍ଣ୍ଣ ହେଉ"—ଏହା କହି ଇନ୍ଦ୍ର ଅପାଲାକୁ ସ୍ୱହସ୍ତରେ ଧରି ରଥର ଚକ୍ରଚଳବାଟେ ତିନିବାର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଚାଳିତ କଲେ । ତାଙ୍କର ଅମୃତ କରସ୍ପର୍ଶରେ ଅପାଲା ଦେହର ସମସ୍ତ ଛଉଚିହ୍ନ ସେହି ମୁହୂର୍ତ୍ତରେ ଅଦୃଶ୍ୟ ହୋଇଗଲା । ସ୍ୱର୍ଗରାଜ ଇନ୍ଦ୍ରଙ୍କ ଅପାର ଅନୁଗ୍ରହ ଲାଭ କରି ଅପାଲା ଭକ୍ତିଗଦ୍‌ଗଦ ପ୍ରାଣରେ ତାହାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା । ଇନ୍ଦ୍ର ତାହାକୁ ଆଶୀର୍ବାଦ କରି ରଥାରୋହଣ କଲେ ।

ଘୁଁ ଘୁଁ ଇନ୍ଦ୍ରଦେବଙ୍କ ନୟନ ଦିବ୍ୟ ରଥଟି ଆକାଶ-ବକ୍ଷକୁ ଉଠିଗଲା । ଅପାଲା କ୍ଷିପ୍ରପଦରେ ଆସି ପିତାଙ୍କୁ ନମସ୍କାର କଲା । ମହର୍ଷି ଅତ୍ରି କନ୍ୟାର ବ୍ୟାଧିଶୂନ୍ୟ ଦେହଦେଖି ବିସ୍ମୟରେ ଅବାକ୍ ହୋଇଗଲେ । ମାତାଙ୍କ ପ୍ରାଣ ଆନନ୍ଦରେ ଉଦ୍‌ବେଳିତ ହୋଇଉଠିଲା ।

ଅପାଲାର ଏହି ଅଦ୍ଭୁତ ଆରୋଗ୍ୟ ସମ୍ବାଦ କେତୋଟିମାତ୍ର ଦିନମଧ୍ୟରେ ଚାରିଆଡ଼େ ପ୍ରଚାରିତ ହୋଇଗଲା । କୃଶାଶ୍ୱ ସେହି ଶୁଭ

ସନ୍ଦେଶ ପାଇବାମାତ୍ରେ ଅତ୍ରିଙ୍କ ଆଶ୍ରମକୁ ଉଦ୍‌ବିଗ୍ନ ହୋଇ ଧାଇଁ-ଆସିଲେ । ଛନ୍ଦୋପାସନାବଳରେ ଅପାଲାର ଅସାଧ୍ୟ ରୋଗ ଭଲଯାଇ ପୂର୍ବର ଅପୂର୍ବ ରୂପକାନ୍ତି ଫେରିଆସିଥିବାର ଦେଖି ସେ ଚମତ୍କୃତ ହୋଇଗଲେ । ତା ପ୍ରତି ସେ ଯେଉଁ ଅବାଞ୍ଛିତ ଆଚରଣ କରିଥିଲେ, ସେଥିପାଇଁ ବହୁତ ଅନୁତାପ କରି ଅପାଲାକୁ କ୍ଷମା ମାଗିଲେ ।

ସତୀ ଅପାଲା ପତିର ଅଶେଷ ଶ୍ରଦ୍ଧା ପାଇ ଅତୀତର ସକଳ ଦୁଃଖ ପାଶୋରି ପକାଇଲା । ସଂସାର ପୁଣି ତାକୁ ଆନନ୍ଦମୟ ବୋଧ ହେଲା । ସେ କୃଶାଶ୍ୱ ସହିତ ଶ୍ୱଶ୍ରୁଗୃହକୁ ଯାତ୍ରା କଲା ଏବଂ ପତିସେବାକୁ ଜୀବନର ପୁଣ୍ୟବ୍ରତ କରି ସୁଖରେ କାଳାତିପାତ କରିବାକୁ ଲାଗିଲା । ଏଣେ ଅତ୍ରିଙ୍କର ଶିରଶ୍ରୀ ପୁନଶ୍ଚ ଫେରି-ଆସିଲା ଏବଂ ତାଙ୍କର ଦରିଦ୍ରତା ଦୂରୀଭୂତ ହୋଇଗଲା । ଏଭଳି ଦେବାନୁଗୃହୀତା କନ୍ୟାଟିର ଜନକ ଜନନୀ ହୋଇଥିବାରୁ ମହର୍ଷି ଓ ମହର୍ଷିପତ୍ନୀ ନିଜ ନିଜକୁ ଧନ୍ୟ ମନେ କଲେ ।



# ଋଷିରକ୍ତ ଓ ରାଜରକ୍ତର ସଂଯୋଗ

## ( ବେଦ ଗଳ୍ପ )

—୧—

ଆଦର୍ଶ ନୃପତି ରାଜର୍ଷି 'ରଥବୀତି'...

ତାଙ୍କର ନାମ ସେକାଳରେ ସବୁରି ମୁଖରେ ଘୋଷିତ ହେଉଥିଲା । ତାଙ୍କ ବଂଶର ରାଜାମାନେ ପୁରୁଷାନୁକ୍ରମେ ରାଜର୍ଷି ଆଖ୍ୟାରେ ଭୂଷିତ ଥିଲେ । ଯାଗଯଜ୍ଞର ଅନୁଷ୍ଠାନ କରିବା ଓ ରାଜା ହୋଇ ମଧ୍ୟ ଋଷିର କାର୍ଯ୍ୟ ସମ୍ପାଦନ କରିବା ସେହି ରାଜ-ବଂଶର ଅଧିକାରୀମାନଙ୍କ ଜୀବନର ପ୍ରଧାନ ବିଶେଷତ୍ୱ । ଉକ୍ତ ବଂଶର ରାଜା ଓ ରାଜପୁତ୍ରମାନେ ପ୍ରାୟଶଃ ଋଷିକନ୍ୟାମାନଙ୍କୁ ବିବାହ କରିଥାନ୍ତି । ସେହିପରି ରାଜକନ୍ୟାଗଣ ମଧ୍ୟ ଋଷିମାନଙ୍କୁ ସ୍ୱାମୀରୂପେ ବରଣ କରିଥାନ୍ତି । ଏହିରୂପେ ଉକ୍ତ ରାଜବଂଶର ଋଷିଗୋଷ୍ଠୀ ସହିତ ସମ୍ବନ୍ଧ ବହୁ କାଳ ହେଲା ଚାଲି ଆସିଛି ।

ଆଜି ରାଜର୍ଷି ରଥବୀତିଙ୍କ ନଗର ବିଚିତ୍ର ସାଜସଜ୍ଜାରେ ବିମଣ୍ଡିତ । ରାଜମାର୍ଗରେ ଚନ୍ଦନଜଳ ସେଚିତ ହୋଇଛି । ସୁଗନ୍ଧ କୁସୁମାବଳୀର ସୌରଭରେ ଚତୁର୍ଦ୍ଦିଗ ମହକି ଉଠୁଛି । ପ୍ରତ୍ୟେକ ଶୃଙ୍ଗାଟକରେ ତୋରଣମାନ ନିର୍ମିତ ହୋଇଛି । ସମଗ୍ର ନଗର ନାନା ବର୍ଣ୍ଣର ଆଲୋକମାଳାରେ ଦେଦୀପ୍ୟମାନ । ନଗରବାସୀ କି ନରନାରୀ, ବାଳକ ବାଳିକା, ସମସ୍ତେ ଆନନ୍ଦରେ ଉନ୍ମତ୍ତ ହୋଇ ଇତସ୍ତତଃ ଧାଉଁଛନ୍ତି ।

ରାଜର୍ଷି ରଥବୀତ ଗୋଟିଏ ବିରାଟ ଯଜ୍ଞର ଆୟୋଜନ କରିଛନ୍ତି । ସେଥିପାଇଁ ଏତେ ସାଜସଜ୍ଜା—ଏତେ ହର୍ଷ-କୋଳାହଳ ।

ଯଜ୍ଞ ଲାଗି ଏକ ପ୍ରଶସ୍ତ ଉନ୍ମୁକ୍ତ ପ୍ରାଙ୍ଗଣ ନିର୍ବାଚିତ ହୋଇଛି । ତାହାରି ମଧ୍ୟରେ ବିଶାଳ ବେଦୀଟିଏ ପ୍ରସ୍ତୁତ ହୋଇ ଶୋଭା ପାଉଛି । ଯଜ୍ଞକାର୍ଯ୍ୟକାରୀ ବ୍ରାହ୍ମଣ, ଋଷି ପ୍ରଭୃତିଙ୍କ ପାଇଁ ଏକ ପ୍ରକାଣ୍ଡ ମଣ୍ଡପ ନିର୍ଦ୍ଦିଷ୍ଟ ହୋଇଛି । ପୁଣି ଦର୍ଶକମାନଙ୍କ ଆସନ ପାଇଁ ଅନ୍ୟ ଏକ ସ୍ୱତନ୍ତ୍ର ମଣ୍ଡପ । ଦେବତାମାନଙ୍କୁ ଆବାହନ କରିବା ଉଦ୍ଦେଶ୍ୟରେ ଯଜ୍ଞମଣ୍ଡପର ପୂର୍ବ ଦିଗରେ ରତ୍ନଜଡ଼ିତ ମନୋହର ମଣ୍ଡପ ବିରାଜିତ । ଏହା ଛଡ଼ା ଅଗ୍ନିଗଣଙ୍କ ଆବାହନ ଲାଗି ପଶ୍ଚିମ ଓ ଦକ୍ଷିଣ ଦିଗରେ ବୃତ୍ତାକାର ଓ ଅର୍ଦ୍ଧବୃତ୍ତାକାର ଦୁଇଟି ବେଦୀ ପ୍ରସ୍ତୁତ ହୋଇଛି । ଏହି ଦୁଇ ବେଦୀରେ ମହାରାଣୀ ଓ ରାଜର୍ଷି ଯଥାକ୍ରମେ ହୋମକାର୍ଯ୍ୟ ସମ୍ପାଦନ କରିବେ । ସମସ୍ତ ବେଦୀ ଓ ମଣ୍ଡପଉପରେ ରଙ୍ଗବେରଙ୍ଗ ବସ୍ତ୍ର ଚନ୍ଦ୍ରାତପମାନ ସୁଶୋଭିତ ।

ରଥବୀତ ଓ ତାଙ୍କ ମହିଷୀ ପଟ୍ଟ କୌଷେୟ ବସ୍ତ୍ର ପରିଧାନ କରି ଆଗନ୍ତୁକ ଋଷି, ଦ୍ୱିଜ ଆଦିଙ୍କୁ ଅଭ୍ୟର୍ଥନା କରିଆଣି ଉପଯୁକ୍ତ ଆସନରେ ବସାଉଛନ୍ତି । କ୍ରମେ କ୍ରମେ ସମସ୍ତ ମଣ୍ଡପ ଲୋକାରଣ୍ୟ ହୋଇଗଲା ।

ହଠାତ୍ ଏହି ସମୟରେ କୋଳାହଳ ସ୍ଥଗିତ ହୋଇଯାଇ ମଣ୍ଡପର ସର୍ବତ୍ର ନିସ୍ତବ୍ଧତା ପରିଲକ୍ଷିତ ହେଲା । ରାଜର୍ଷି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଏପରି ନୀରବତାର କାରଣ ଜାଣିବାପାଇଁ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲେ । ଦେଖିଲେ, କିଛି ଦୂରରେ ଦୁଇ ଜଣ ବ୍ୟକ୍ତି ଯଜ୍ଞଭୂମି ଅଭିମୁଖରେ ଅଗ୍ରସର ହେଉଛନ୍ତି ।

ସମ୍ମୁଖରେ ଆସୁଥିବା ବୃଦ୍ଧ ଲୋକଟିର ମସ୍ତକରେ ପିଙ୍ଗଳ ଜଟା, ମୁଖରେ ଦୀର୍ଘ ଶ୍ମଶ୍ରୁ । ଅନ୍ୟ ଜଣକର ମୁଖମଣ୍ଡଳରେ ଯୌବନର ପ୍ରଖର ଦୀପ୍ତି । ଉଭୟଙ୍କର ରୂପ ବ୍ରହ୍ମ ତେଜରେ ଉଦ୍ଭାସିତ—ସମୁଦାୟ ଦେହ ଶୁଦ୍ଧ ସ୍ୱର୍ଣ୍ଣ ସଦୃଶ ସମୁଜ୍ଜ୍ୱଳ । ଉନ୍ନତ ଲଲାଟରେ ଶୁଭ୍ର ତ୍ରିପୁଣ୍ଡ୍ର—ହସ୍ତରେ କମଣ୍ଡଳୁ ଓ ଯଷ୍ଟିଦଣ୍ଡ । ତାଙ୍କର ପ୍ରଶାନ୍ତ ନେତ୍ରରେ ସରଳତାର ଭାବ ପରିସ୍ଫୁଟ ।

ଏ ଦୁଇ ଜଣ କିଏ, ଜାଣିବାକୁ ଅଧିକ ସମୟର ପ୍ରୟୋଜନ ହେଲା ନାହିଁ । ରଥବୀତି ସଙ୍ଗେ ସଙ୍ଗେ ମଣ୍ଡପଦ୍ୱାରକୁ ଛୁଟିଯାଇ ସେଦୁହିଁଙ୍କୁ ପାଛୋଟିଆଣି ସମୁଚିତ ଆସନରେ ଉପବିଷ୍ଟ କରାଇଲେ । ଏବେ ସମସ୍ତେ ଅବଗତ ହୋଇଲେ ଯେ, ବୟସ୍କ ବ୍ୟକ୍ତି ମହର୍ଷି 'ଅର୍ଚନାନା' ଓ ଯୁବକଟି ତାଙ୍କର ଗୁଣଧର ଜ୍ୟେଷ୍ଠପୁତ୍ର 'ଶ୍ୟାବାଶ୍ୱ' । ଏହି ଅର୍ଚନାନା ହେଉଛନ୍ତି ଋଗ୍‌ବେଦର ସୁନାମପ୍ରସିଦ୍ଧ ସୂତ୍ରକାର 'ଅତ୍ରି' ମହର୍ଷିଙ୍କର ସୁଯୋଗ୍ୟ ପୁତ୍ର ।

ରଥବୀତି ଅର୍ଚନାନାଙ୍କୁ ଯଜ୍ଞପାଇଁ ବିଶେଷଭାବରେ ନିମନ୍ତ୍ରଣ କରିଥିଲେ ବୋଲି ତାଙ୍କ ଆଗମନକୁ ଏପର୍ଯ୍ୟନ୍ତ ପ୍ରତୀକ୍ଷା କରି ରହିଥିଲେ । ଏବେ ଯଜ୍ଞକର୍ମ ଆରମ୍ଭ ହେଲା । ଆହୁତିର ପବିତ୍ର ଅଗ୍ନି ଆକାଶଦେଶରେ ଶିଖା ବିସ୍ତାର କରି ନାଚିଉଠିଲା । ମନ୍ତ୍ର, ସ୍ତୋତ୍ର ଆଦିର ଗୁରୁଗମ୍ଭୀର ନାଦରେ କ ଦର୍ଶକ କ ଶ୍ରୋତା ସମସ୍ତେ ମୁଗ୍‌ଧ ହୋଇଗଲେ ।

ଶେଷରେ ଯଜ୍ଞକାର୍ଯ୍ୟ ସମ୍ପୂର୍ଣ୍ଣ ହେଲା । ସମାଗତ ଜନତା ଯେ ଯାହାର ଗୃହକୁ ଫେରିଯିବାକୁ ଲାଗିଲେ ।

ପାଣ୍ଡିତ୍ୟ ମୋତେ ଅଜ୍ଞାତ ନାହିଁ । ବହୁ ଗୁଣର ଆଧାର ହୋଇଥିଲେହେଁ ତାଙ୍କଠାରେ ଗୋଟିଏ ବଶିଷ୍ଟ ଗୁଣର ଅଭାବ ଅଛି । ସେହି ଗୁଣଟି ହେଉଛି ଋଷିତ୍ୱ । ମୋ ନିକଟରେ ଋଷିତ୍ୱର ମୂଲ୍ୟ ସର୍ବାପେକ୍ଷା ଅଧିକ । ଶ୍ୟାବାଶ୍ୱ ଋଷିର ପୁତ୍ର; ମାତ୍ର ଋଷି ପଦବାଚ୍ୟ ନୁହନ୍ତି । ଯେଉଁଦିନ ସେ କଠୋର ତପଶ୍ଚରଣ-ଦ୍ୱାରା ନିଜର ଆପୂର୍ବ ବଡ଼୍ୟାକୁ ପ୍ରକୃତ ଅନୁଭୂତିକ ଆଣିପାରିବେ ସେହିଦିନ ଯାଇ ତାଙ୍କୁ ଋଷି ବୋଲି ସ୍ୱୀକାର କରାଯିବ । ସେତେ-ବେଳେ ତାଙ୍କ ପ୍ରାଣରେ ପରମାତ୍ମାଙ୍କର ସ୍ୱରୂପ ସ୍ୱତଃ ବିକଶିତ ହୋଇ ଉଠିବ । ଏ ଚଦର୍ଭ ରାଜବଂଶରେ ଏପର୍ଯ୍ୟନ୍ତ କେବଳ ଋଷିମାନଙ୍କୁ କନ୍ୟାଦାନ କରାହୋଇ ଆସିଛି । ତେଣୁ ଋଷିପୁତ୍ର ଶ୍ୟାବାଶ୍ୱ ମୋ କନ୍ୟାର ସ୍ୱାମୀ ହେବାକୁ ବର୍ତ୍ତମାନ ଅବସ୍ଥାରେ ଅନୁପଯୁକ୍ତ ।"

ମହାରାଣୀଙ୍କର ମତ ଅକ୍ଷରେ ଅକ୍ଷରେ ସତ୍ୟ ଓ ଯୁକ୍ତିଯୁକ୍ତ ହେଲେହେଁ ରଥବୀତି ତାହା ଶୁଣି ମର୍ମାହତ ହେଲେ । ସେ ବିଷଣ୍ଣ ମନରେ ଯାଇ ସେହି କଥା ଅର୍ଚ୍ଚନାନାଙ୍କୁ ଜ୍ଞାପନ କଲେ । ମହର୍ଷିଙ୍କ ଆଶାତରୁ ସାହସା ଉନ୍ମୂଳିତ ହେଲା—କାମନାର କମନୀୟ କମଳଟି ତୁଷାରପାତରେ ଭସ୍ମ ପାଲଟିଲା । ସେ ଭଗ୍ନମନୋରଥ ହୋଇ ପୁତ୍ର ଶ୍ୟାବାଶ୍ୱ ସହିତ ମହାରାଜାଙ୍କଠାରୁ ବିଦାୟ ନେଇଲେ ।

— ୩ —

ଆଶ୍ରମାଭିମୁଖୀ ପିତାପୁତ୍ର······

ପଥମଧ୍ୟରେ ଶ୍ୟାବାଶ୍ୱ ପିତାଙ୍କଠାରୁ ନିଜ ବିବାହପ୍ରସଙ୍ଗର ସକଳ ବୃତ୍ତାନ୍ତ ଶୁଣିପାରିଲେ । ମହାରାଣୀଙ୍କ ଅଭିମତ ଯେ ଅତି

ଯଥାର୍ଥ, ଏହା ସେ ଉତ୍ତମରୂପେ ହୃଦୟଙ୍ଗମ କଲେ । ତେଣୁ ଆଶ୍ରମରେ ଉପସ୍ଥିତ ହେଲାପରେ ରାଜକନ୍ୟା ମନୋରମାଙ୍କର ସ୍ୱାମୀ ହେବାପାଇଁ ନିଜକୁ ଉପଯୁକ୍ତ କରିବା ଉଦ୍ଦେଶ୍ୟରେ ସେ ଉଗ୍ର ତପସ୍ୟା ସାଧନ କରିବସିଲେ ।

ଲକ୍ଷ୍ୟ ଠିକ୍‌ଥିଲେ ଅଭୀଷ୍ଟ ଫଳ ଅନାୟାସରେ ଲବ୍ଧ ହୁଏ । ତେଣୁ ଅଳ୍ପକାଳ ତପସ୍ୟାରେ ଶ୍ୟାବାଶ୍ୱଙ୍କ ଆଗରେ ଏକ ଅଦ୍ଭୁତ ଘଟଣା ସଂଘଟିତ ହେଲା । ଦିନେ ହଠାତ୍ କେତେକ ଦିବ୍ୟପୁରୁଷ ଆବିର୍ଭୂତ ହେଲେ । ସେମାନଙ୍କର ସର୍ବାଙ୍ଗରୁ ଉଜ୍ଜ୍ୱଳ ସ୍ୱର୍ଣ୍ଣଆଭା ଫୁଟି ବାହାରୁଥିଲା । ପ୍ରତ୍ୟେକଙ୍କର ସ୍କନ୍ଧରେ ଆୟୁଧ, ପାଦରେ ହେମପାଦୁକା, କଣ୍ଠରେ ରତ୍ନମାଳା, ମସ୍ତକରେ କନକକିରୀଟ, ହସ୍ତରେ ସ୍ଥିରପ୍ରଭା ବିଦ୍ୟୁଲ୍ଲତା ।

ସେମାନଙ୍କ ଦୀପ୍ତି ଜାଲରେ ଶ୍ୟାବାଶ୍ୱଙ୍କର ଚକ୍ଷୁଦ୍ୱୟ ମୁଦ୍ରିତ ହୋଇଗଲା । ଯେତେ ଚେଷ୍ଟା କଲେ ମଧ୍ୟ କାହାରିକୁ ଚିହ୍ନି ନ ପାରି ସେ ଶେଷରେ ପ୍ରଶ୍ନ କଲେ :

"ହେ ଜ୍ୟୋତିର୍ମୟ ପୁରୁଷଗଣ ! ଆପଣମାନେ କିଏ ? କି ଉଦ୍ଦେଶ୍ୟରେ ଏଠାରେ ଆବିର୍ଭୂତ ହୋଇଅଛନ୍ତି ? କୃପା କରି ସଂଶୟମୋଚନ ପୂର୍ବକ ମୋତେ ଚରିତାର୍ଥ କରନ୍ତୁ ।"

ଦିବ୍ୟପୁରୁଷମାନେ ପ୍ରୀତ ହୋଇ ଶ୍ୟାବାଶ୍ୱଙ୍କୁ ଦିବ୍ୟଚକ୍ଷୁ ପ୍ରଦାନ କଲେ । ସହସା ଶ୍ୟାବାଶ୍ୱଙ୍କ ମାନସରୁ ଅଜ୍ଞାନର ଯବନିକା ଅପସାରିତ ହେଲା । ସେ ଚକ୍ଷୁ ଉନ୍ମୋଚନ କରି ଦେଖିଲେ, ସମ୍ମୁଖରେ ଉପାସ୍ୟ ଇଷ୍ଟଦେବ ବାୟୁଦେବତାଗଣ ଦଣ୍ଡାୟମାନ ହୋଇଛନ୍ତି । ସଙ୍ଗେ ସଙ୍ଗେ ଶ୍ୟାବାଶ୍ୱ ସେମାନଙ୍କୁ ସ୍ତୁତି କଲେ :

"ହେ ମରୁତ ଦେବତା ! ଆପଣମାନେ ଭାସ୍କରଙ୍କ ସଦୃଶ ଦୀପ୍ତିମନ୍ତ । ମୁଁ ଆପଣମାନଙ୍କର ସାମାନ୍ୟ ଉପାସକ । ଆପଣମାନେ ପ୍ରଚୁର ବୃଷ୍ଟି କରାଇ ପ୍ରତ୍ୟେକ ପ୍ରାଣୀର ମଙ୍ଗଳସାଧନ କରନ୍ତୁ । ଆପଣମାନଙ୍କ ପ୍ରଭାବରେ ପର୍ବତମାଳା ପ୍ରକମ୍ପିତ ହୁଅନ୍ତି—ଅନନ୍ତ ସମୁଦ୍ରରେ ଉତ୍ତୁଙ୍ଗ ତରଙ୍ଗାବଳୀ ଊର୍ଦ୍ଧ୍ୱକୁ ପ୍ରକ୍ଷିପ୍ତ ହୁଅନ୍ତି । ବୃତ୍ରାସୁରକୁ ସଂହାର କଲାବେଳେ ଇନ୍ଦ୍ରଙ୍କୁ ଆପଣମାନେ ସାହାଯ୍ୟ ପ୍ରଦାନ କରିଥିଲେ । ବେ ମୋ ପ୍ରତି ସଦୟ ହୋଇ ମୋର ତପସ୍ୟାକୁ ସଫଳ କରନ୍ତୁ ।"

ଶ୍ୟାବାଶ୍ୱଙ୍କର ସ୍ତୁତିରେ ମରୁତଗଣ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସ୍ୱ ସ୍ୱ ଗଳାରେ ଥିବା କାଞ୍ଚନମାଳାମାନ ନେଇ ତାହାଙ୍କୁ ପିନ୍ଧାଇଦେଲେ । ତତ୍ପରେ ଉକ୍ତ ଦେବଗଣ ସେଠାରୁ ଅଦୃଶ୍ୟ ହୋଇଗଲେ ।

ତପସ୍ୱୀ ଶ୍ୟାବାଶ୍ୱଙ୍କ ଅଭୀଷ୍ଟ ସିଦ୍ଧ ହେଲା । ତାଙ୍କର ସମଗ୍ର ଶରୀର ଓ ମନରେ ଏକ ଅଭିନବ ଅନୁଭୂତିର ସ୍ଫୂର୍ତ୍ତି ଖେଳିଗଲା । ସେ ଏବେ ହିଁ ଜଣେ ଋଷିରେ ପରିଣତ ହେଲେ । ତାଙ୍କ ସର୍ବାଙ୍ଗରେ ଅପୂର୍ବ ନୂତନ ଜ୍ୟୋତିର ବିକାଶ !

—୪—

ଶ୍ୟାବାଶ୍ୱଙ୍କ ଅନ୍ତରରେ ଚନ୍ଦ୍ରସ୍ୱର ବାଣୀ......

ସେ ତପସ୍ୟାସ୍ଥଳ ଛାଡ଼ି ପିତାମହ ଅତ୍ରିଙ୍କ ତପୋବନକୁ ଅଗ୍ରସର ହେଲେ । ମାର୍ଗରେ ତାଙ୍କୁ ଯେ ଦେଖିଲା, ଋଷି ବୋଲି ପ୍ରଣାମ କଲା । କିଛି ଦୂର ଅତିକ୍ରମ କଲାପରେ ମହାରାଜା ତରନ୍ତ ଓ ତାଙ୍କ ମହିଷୀ ଶଶୀୟସୀଙ୍କ ସହିତ ସାକ୍ଷାତ ହେଲା । ଶ୍ୟାବାଶ୍ୱଙ୍କୁ ଦେଖି ସେ ଦୁହେଁ ଜାଣିପାରିଲେ ଯେ, ସେ ନିଶ୍ଚୟ ଜଣେ ମହାତପା

ଋଷି । ତେଣୁ ତାହାଙ୍କୁ ସାଦର ଅଭ୍ୟର୍ଥନା ସହ ରାଜପୁରୀକୁ ନେଇ ଯଥୋଚିତ ପୂଜା କଲେ ଏବଂ ବିଦାୟ ଦେଲାବେଳେ ତାଙ୍କୁ ଏକ ଲକ୍ଷ ଧେନୁ, ଅଶ୍ୱ ଏବଂ ଅପରିମିତ ସ୍ୱର୍ଣ୍ଣ ପ୍ରଦାନ କରି ସ୍ୱୀୟ ଗୁଣଗ୍ରାହିତାର ପରିଚୟ ଦେଲେ । ଏହିରୂପେ ପଥମଧ୍ୟରେ ବହୁ ରାଜାମହାରାଜାଙ୍କଠାରୁ ସମ୍ବର୍ଦ୍ଧନା, ସମ୍ମାନ, ସେବା ଓ ଧନରତ୍ନ ଲାଭ କରି ଶ୍ୟାବାଶ୍ୱ ଋଷିତ୍ୱର ସମ୍ମାନରେ ଭୂଷିତ ହେଲେ ।

ଶେଷରେ ଅତ୍ରି ମହର୍ଷିଙ୍କ ଆଶ୍ରମ ପଡ଼ିଲା । ତ୍ରିକାଳଜ୍ଞ ଅତ୍ରି ପୌତ୍ରକୁ ଦେଖିଲାମାତ୍ରେ ଆନନ୍ଦରେ ବିହ୍ୱଳ ହୋଇଯାଇ ସ୍ନେହରେ ଆଲିଙ୍ଗନ କରି କହିଲେ :

"ଶ୍ୟାବାଶ୍ୱ ! ତୋତେ ଦିବ୍ୟଜ୍ଞାନୀ ଋଷିମାନେ ଦେଖିବାର ସୌଭାଗ୍ୟ ପାଇବାରୁ ଆଜ ମୋର ଏତେ ଦୀର୍ଘକାଳ ବଞ୍ଚିରହିବା ପ୍ରକୃତରେ ସାର୍ଥକ ହେଲା । ବିଳମ୍ବ ନ କରି ତୁ ଏବେ ରାଜର୍ଷି ରଥବୀତିଙ୍କ ନିକଟକୁ ଗମନ କର ଏବଂ ତାଙ୍କ କନ୍ୟା ସହିତ ପରିଣୀତ ହୋଇ ପିତୃ-ଆଶ୍ରମରେ ଅବସ୍ଥାନ କର ।"

ଶ୍ୟାବାଶ୍ୱ ପିତାମହଙ୍କ ଆଦେଶ ଶିରୋଧାର୍ଯ୍ୟ କରି ରଥବୀତିଙ୍କ ନଗର ଅଭିମୁଖେ ଯାତ୍ରା କଲେ । ସେ ପଥମଧ୍ୟରେ ଭାବିଲେ— ନିଜେ ନିଜ ତପସ୍ୟାସିଦ୍ଧି ବିଷୟ ରାଜର୍ଷିଙ୍କ ଆଗରେ ପ୍ରକାଶ କରିବା ଅଶୋଭନୀୟ । ତେଣୁ ସେ 'ରାତ୍ରି' ଦେବୀଙ୍କୁ ପ୍ରାର୍ଥନା କଲେ :

"ଭଗବତି ! ତୁମେ ଦୟା କରି ମୋର ଦୂତୀରୂପେ ରଥବୀତିଙ୍କ ସମୀପକୁ ଯାଅ ଏବଂ ମୋର ଋଷିତ୍ୱପ୍ରାପ୍ତି କଥା ତାଙ୍କୁ ଜଣାଅ । ମୁଁ ତୁମ ପଛେ ପଛେ ଯାଇ ତାଙ୍କ ନଗରରେ ଉପସ୍ଥିତ ହେବି ।"

"ରନ୍ତିଦେବୀ ଏଥିରେ ସମ୍ମତ ହୋଇ ରଥବୀତିଙ୍କ ନିକଟକୁ ଯାଇ ଶ୍ୟାବାଶ୍ୱଙ୍କର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ କଲେ । ରାଜର୍ଷି ଆନନ୍ଦରେ ଗଦ୍‌ଗଦ ହୋଇ ସଙ୍ଗେ ସଙ୍ଗେ ମହାରାଣୀଙ୍କ ଆଗରେ ତାହା ପ୍ରକାଶ କଲେ । ତାହା ଶୁଣି ମହାରାଣୀଙ୍କ ହୃଦୟରେ ଆନନ୍ଦର ଊର୍ମି ଖେଳିଗଲା ।



[ ଋଷି ଶ୍ୟାବାଶ୍ୱଙ୍କୁ ରାଜକନ୍ୟା ମନୋରମାଙ୍କର ସ୍ୱାମୀରୂପେ ଗ୍ରହଣ ]

ରାଜର୍ଷି ସଦଳବଳରେ ନଗରବାହାରକୁ ଆସି ଋଷି ଶ୍ୟାବାଶ୍ୱଙ୍କୁ ପାଛୋଟି ନେଲେ ଏବଂ ଯଥୋଚିତ ଅଭ୍ୟର୍ଥନା କରି ତାଙ୍କୁ ରାଜପ୍ରାସାଦରେ ରଖାଇଲେ । ପରେ ପରେ ବିବାହ ଉତ୍ସବର ସମସ୍ତ ଆୟୋଜନ ହେଲା । ରଥବୀତି ଶୁଭଲଗ୍ନରେ ଶ୍ୟାବାଶ୍ୱ ହସ୍ତରେ କନ୍ୟା ମନୋରମାଙ୍କୁ ସମର୍ପଣ କରି ପରମ ପରିତୋଷ ଲାଭକଲେ ।

ପରିଣୟ କାର୍ଯ୍ୟ ସମ୍ପନ୍ନ ହେଲାପରେ ଶ୍ୟାକାଶୁ ଅସଂଖ୍ୟ ଯୌତୁକଦ୍ରବ୍ୟ ସହ ମନୋରମାଙ୍କୁ ଘେନି ପିତାଙ୍କ ଆଶ୍ରମକୁ ଗଲେ । ବିପୁଳ ଉଲ୍ଲାସରେ ଆଶ୍ରମଭୂମି ଫାଟିଗଲା । ପିତା ଅର୍ଚ୍ଚନାନା ମନୋମତ ପୁତ୍ରବଧୂ ପାଇ ନିଜକୁ ଧନ୍ୟ ମନେ କଲେ ।

ସର୍ବଧ୍ୱଂସୀ କାଳର ପ୍ରଖର ସ୍ରୋତରେ ଭାରତର ଉତ୍ତର-ପଶ୍ଚିମସ୍ଥ ଅର୍ଚ୍ଚନାନାଙ୍କ ଆଶ୍ରମଟି ବହୁ କାଳରୁ ଭାସିଯାଇଛି; ମାତ୍ର ଗୋମତୀ ନଦୀ ସେହି ପୁଣ୍ୟ ଆଶ୍ରମର ଉପକଣ୍ଠରେ ପ୍ରବାହିତ ହୋଇ ଋଷି ଦମ୍ପତିଙ୍କ ବିବାହକାହାଣୀକୁ ନିଜର କଳକଳ ଛନ୍ଦରେ ଏପର୍ଯ୍ୟନ୍ତ ଗାନ କରିଆସୁଅଛି ।



# ପତିବ୍ରତା ସୁକନ୍ୟା

## ( ବେଦ ଗଳ୍ପ )

—୧—

ମହାତପା ଚ୍ୟବନ······

ମହର୍ଷି ଭୃଗୁ ତାହାଙ୍କର ପିତା । ଚ୍ୟବନ ତପସ୍ୟାରେ ସିଦ୍ଧିଲାଭ କରି ମହର୍ଷି ଆଖ୍ୟା ପାଇଥିଲେ । 'ଚ୍ୟବନପ୍ରାଶ' ନାମରେ ଯେଉଁ ଔଷଧ ବର୍ତ୍ତମାନ ଦେଖାଯାଏ, ତାହା ଏହି ଚ୍ୟବନ ମହର୍ଷିଙ୍କ ନାମ ଅନୁସାରେ ପ୍ରଥମେ ନାମିତ ହୋଇଥିଲା । କଥିତ ଅଛି, ଦେବବୈଦ୍ୟ ଅଶ୍ୱିନୀକୁମାରଦ୍ୱୟ ବୃଦ୍ଧ ଚ୍ୟବନଙ୍କୁ ଏହି ଯୌବନପ୍ରଦ ଔଷଧ ପ୍ରଦାନ କରିଥିଲେ ।

ସେକାଳରେ ପୁଷ୍କର କ୍ଷେତ୍ର ଅତ୍ୟନ୍ତ ପବିତ୍ର ବୋଲି ଖ୍ୟାତ ଥିଲା । ତାହାର ମହାତ୍ମ୍ୟ ଚ୍ୟବନଙ୍କୁ ବହୁ ଦିନୁଁ ଆକୃଷ୍ଟ କରିଥାଏ । ତେଣୁ ସେ ତପସ୍ୟାପାଇଁ ସେହି ସ୍ଥାନଟିକୁ ନିର୍ବାଚନ କଲେ ।

ସେହି ପବିତ୍ର ତୀର୍ଥରେ ରମଣୀୟ 'ପୁଷ୍କର' ହ୍ରଦ । ସହସ୍ର ସହସ୍ର ପ୍ରସ୍ଫୁଟିତ ପଦ୍ମପୁଷ୍ପରେ ତାହାର ନୀଳ କଳେବର ନିରନ୍ତର ଶୋଭା ପାଉଥାଏ । ପୁଷ୍କର ହ୍ରଦର ପାର୍ଶ୍ୱରେ ଗଭୀର ଅରଣ୍ୟ । ଜନବସତିଠାରୁ ବହୁ ଦୂରରେ ଥିବାରୁ ସ୍ଥାନଟି ଅତି ନିକାଞ୍ଚନ । କେବଳ ପକ୍ଷୀକଳରବ ଛଡ଼ା ଅନ୍ୟ କୌଣସିପ୍ରକାର ଗୋଳମାଳ ବା କୋଳାହଳ ସେଠାରେ ନ ଥିଲା । ମନେହୁଏ, ସତେ ଯେପରି ଧରିତ୍ରୀ ସେହି ନିର୍ଜନ ସ୍ଥଳୀଟିକୁ ଏକ ଧ୍ୟାନମଣ୍ଡପରେ ପରିଣତ କରିଛି ।

ଚବ୍ୟନ ସେହି ନିବିଡ଼ ବନଗର୍ଭରେ ଉପସ୍ଥିତ ହୋଇ ତାହାର ବିଜନ ମାଧୁର୍ଯ୍ୟରେ ମୁଗ୍ଧ ହୋଇଗଲେ । ବାସ୍ତବରେ ଯେକୌଣସି ଋଷିପ୍ରାଣ ତାହା ଅତ୍ୟନ୍ତ ଲୋଭନୀୟ । ଚ୍ୟବନ ତାହାର ମଧ୍ୟରେ ଗୋଟିଏ ସ୍ଥାନରେ ବସି ଧ୍ୟାନମଗ୍ନ ହେଲେ ।

ତପସ୍ୟାରେ ବହୁକାଳ ଅତୀତ ହେଲା । ଗ୍ରୀଷ୍ମ ପରେ ବର୍ଷା, ବର୍ଷା ପରେ ଶରତ୍, ଶରତ୍ ପରେ ଶୀତ, ଏହିପରି ଗୋଟିକ ପରେ ଗୋଟିଏ ଋତୁ ବନଭୂମିକୁ ଆସି ଚାଲିଗଲା । ପୃଥିବୀରେ କେତେ ପରିବର୍ତ୍ତନ ଘଟିଲା; ତଥାପି ଚ୍ୟବନଙ୍କର ତପସ୍ୟା ଶେଷ ହେଲା ନାହିଁ ।

ଏକାଗ୍ର ଈଶ୍ୱରଚିନ୍ତାରେ ସେ ଏପରି ନିମଗ୍ନ ହୋଇଗଲେ ଯେ, ବାହ୍ୟ ଶରୀରର ଜ୍ଞାନ ତାଙ୍କର ଆଦୌ ରହିଲା ନାହିଁ । ତପସ୍ୟାଦ୍ୱାରା ତାଙ୍କ ଦେହ ଅତି କୃଶ ହୋଇଗଲା । ସେହି ନିଶ୍ଚଳ ଦେହର ଚତୁଃପାର୍ଶ୍ୱେ ବଲ୍ମୀକମାନେ ହୁଙ୍କା ରଚନା କଲେ । ସର୍ପମାନେ ତାଙ୍କ ଗଳାରେ ଲମ୍ବି ଖେଳିବାକୁ ଲାଗିଲେ । ମସ୍ତକର ଜଟାସବୁ ବଢ଼ି ଏତେ ଦୀର୍ଘ ହୋଇଗଲା ଯେ, ସେଗୁଡ଼ିକ ବୃକ୍ଷର ଓହଳ ପରି ଦେଖାଗଲା । କ୍ଷୁଦ୍ର କ୍ଷୁଦ୍ର ପକ୍ଷୀମାନେ ଆସି ତାହାମଧ୍ୟରେ ନୀଡ଼ ନିର୍ମାଣ କଲେ । ଏହିରୂପେ ଚ୍ୟବନଙ୍କ ଦେହଟି ଗୋଟିଏ ନିର୍ଜୀବ ବସ୍ତୁପରି ଦେଖାଗଲା । କେବଳ ମୁଦ୍ରିତ ଚକ୍ଷୁ ଦୁଇଟିରୁ ସଜୀବତାର ସାମାନ୍ୟ ଲକ୍ଷଣ ଯାହା ପ୍ରକାଶ ପାଉଥାଏ ।

ସେତେବେଳେ ପଶ୍ଚିମ ଆର୍ଯ୍ୟାବର୍ତ୍ତର ଏକଚ୍ଛତ୍ର ସମ୍ରାଟ ଥାଆନ୍ତି 'ଶର୍ଯ୍ୟାତିମାନବ' । ସେ ଥରେ ଚିତ୍ତବିନୋଦନପାଇଁ ମୃଗୟାବିଳାସରେ ବାହାରିଲେ । ନାନା ଅଞ୍ଚଳରେ ପାରିଧି କରି କରି ଶେଷରେ ଆସି ପୁଷ୍କର ବନରେ ପହଞ୍ଚିଲେ । ତାଙ୍କ ଗହଣରେ

ଥାଆନ୍ତି ଅସଂଖ୍ୟ ସୈନ୍ୟସାମନ୍ତ ଓ ବହୁ ତରୁଣ ବାଳକ । ଏହାଛଡ଼ା ସମ୍ରାଟଙ୍କ ସଙ୍ଗରେ ଆସିଥାନ୍ତି ତାଙ୍କର ଅପରୂପା କନ୍ୟା କମନୀୟଗାତ୍ରୀ 'ସୁକନ୍ୟା' । ଅରଣ୍ୟର ଏକ ସ୍ବଚ୍ଛ ନିର୍ଝରକୂଳରେ ସମ୍ରାଟଙ୍କ ଶିବିର ସ୍ଥାପିତ ହେଲା ।

ସମ୍ରାଟ ଅନେକ ସମୟରେ କନ୍ୟାସହ ପାଦରେ ବୁଲି ବନଭୂମିର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି । ଚଞ୍ଚଳମତି ବାଳକମାନେ ଅତି ପ୍ରଫୁଲ୍ଲ ଚିତ୍ତରେ ଝରଣାଜଳରେ ସନ୍ତରଣ କରନ୍ତି, କେତେବେଳେ ବା ବୃକ୍ଷଲତାମାନଙ୍କରୁ ଫଳପୁଷ୍ପ ଆହରଣ କରିବାରେ ମତ୍ତ ରହନ୍ତି ।

ଦିନେ ବାଳକଗଣ ବନମଧ୍ୟରେ ବୁଲୁ ବୁଲୁ ଦୈବଯୋଗେ ତପସ୍ୟାରତ ଚ୍ୟବନଙ୍କ କ୍ଷୀଣ ଶରୀରଉପରେ ସେମାନଙ୍କର ଦୃଷ୍ଟି ପଡ଼ିଗଲା । ଚପଳତାବଶତଃ ସେମାନେ ତାଙ୍କ ଉପରକୁ ଲୋଷ୍ଟ୍ର ନିକ୍ଷେପ କରିବାକୁ ଲାଗିଲେ । ସେହି ଆଘାତରେ ଋଷିଙ୍କର ଧ୍ୟାନଭଙ୍ଗ ହେଲା । ତପସ୍ୟାରେ ବ୍ୟାଘାତ ଘଟିବାରୁ ସେ ଚକ୍ଷୁ ଫିଟାଇ ଚାହିଁଲେ । ତାଙ୍କ ଶାନ୍ତ ଚିତ୍ତରେ ସହସା କ୍ରୋଧର ସଞ୍ଚାର ହେଲା । ଋଷିଙ୍କର ରୋଷଦୀପ୍ତ ଚକ୍ଷୁ ଦେଖି ଦୁଷ୍ଟ ବାଳକମାନେ ଜୀଏ କାହିଁ ଭୟରେ ପଳାୟନ କଲେ ।

ସଙ୍ଗେ ସଙ୍ଗେ ଏକ ବିପ୍ଳବର ସୃଷ୍ଟି ହେଲା । ଋଷିଙ୍କ ଅଦ୍ଭୁତ ଶକ୍ତି ପ୍ରଭାବରେ ସୈନ୍ୟ ଓ ବାଳକମାନଙ୍କ ମଧ୍ୟରେ ଭୀଷଣ ବିବାଦ ଆରମ୍ଭ ହୋଇଗଲା । ହଠାତ୍ ଏପରି କଳହ ଉପୁଜିବାର କାରଣ କେହିହେଲେ କିଛି ଜାଣିପାରିଲେ ନାହିଁ ।

ବାହାରେ ତୁମୁଳ କୋଳାହଳ ଶବ୍ଦ ଶୁଣି ସମ୍ରାଟ୍ ଶିବିରରୁ ବାହାରି ଆସିଲେ ଏବଂ ଘଟନାର ତଥ୍ୟ ବୁଝିବାପାଇଁ ସମସ୍ତଙ୍କୁ

ନାନା ପ୍ରଶ୍ନ ପଚାରିଲେ । କ୍ଷଣକରେ ବାଳକମାନଙ୍କର କାଣ୍ଡ ଶୁଣି ନିଶ୍ଚିତରୂପେ ଜାଣିଲେ, ସେହି ଧ୍ୟାନରତ ଋଷି ମହାତ୍ମା ଚ୍ୟବନଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । କାରଣ ସେ ଏଥିପୂର୍ବରୁ ଶୁଣିଥିଲେ ଯେ, ଚ୍ୟବନ ଋଷି ସେହି ଅରଣ୍ୟରେ ତପସ୍ୟା କରୁଛନ୍ତି ।

ବାଳକମାନଙ୍କର ଉଦ୍ଧତ ଆଚରଣରେ ଶର୍ଯ୍ୟାତି ବଡ଼ ମର୍ମାହତ ହେଲେ । ଋଷିଙ୍କୁ ଉତ୍ତେଜିତ କରିଥିବା ଯୋଗୁଁ ଏଭଳି ବିଷମୟ ଫଳ ଫଳିଛି, ଏହା ତାଙ୍କର ଦୃଢ଼ ବିଶ୍ୱାସ ହେଲା । ତେଣୁ ଶୀଘ୍ର ଏହାର ପ୍ରତିକାର କରିବାପାଇଁ ସେ ତତ୍ପର ହୋଇଉଠିଲେ । କେ ଜାଣେ, ଏହାପରେ ଆହୁରି କଣ ବିଭ୍ରାଟ ଘଟିପାରେ—ଆହୁରି କଣ ବିପଦ ଆସିପାରେ !

କ୍ଷଣେ ବିଳମ୍ବ ନ କରି ଶର୍ଯ୍ୟାତି ସୁକନ୍ୟାଙ୍କୁ ସଙ୍ଗରେ ଘେନି ଚ୍ୟବନଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ଭକ୍ତିର ସହିତ ତାଙ୍କ ଚରଣରେ ପ୍ରଣାମ କରି ଅପରାଧୀଟି ପରି କୃତାଞ୍ଜଳିପୂର୍ବକରେ କହିଲେ :

"ହେ ପୁଣ୍ୟାତ୍ମା ! ବାଳକମାନେ ଆପଣଙ୍କୁ ଚିହ୍ନି ନ ଥିବାରୁ ଆପଣଙ୍କପ୍ରତି ଏଭଳି ଦୁର୍ବ୍ୟବହାର କରିଛନ୍ତି । ସେମାନଙ୍କର ସେହି ଅପରାଧପାଇଁ ସମ୍ରାଟ୍ ଶର୍ଯ୍ୟାତିମାନବ ଆଜି ନତମସ୍ତକରେ କ୍ଷମା ଭିକ୍ଷା କରୁଛି । ଏବେ କ୍ରୋଧ ସମ୍ବରଣ କରି ବିପ୍ଳବର ଅବସାନ ଘଟାନ୍ତୁ । ଆଉ, ମୋର ଏହି ସ୍ନେହମୟୀ କନ୍ୟା ସୁକନ୍ୟାକୁ ଆଶୀର୍ବାଦ କରନ୍ତୁ, ତାହାର ଜୀବନ ସୁଖମୟ ହେଉ ।"

ସୁକନ୍ୟା ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ସମ୍ରାଟଙ୍କର ବିନୟପୂର୍ଣ୍ଣ ଭାଷାରେ ଚ୍ୟବନ ସନ୍ତୁଷ୍ଟ ହେଲେ । ତାହା ସଙ୍ଗେ ସଙ୍ଗେ ରାଜକନ୍ୟାର ସରଳ ସୁନ୍ଦର ମୁଖମଣ୍ଡଳରେ

ଭକ୍ତି ଓ ପୁଣ୍ୟର ତେଜ ଦେଖି ମୁଗ୍ଧ ହେଲେ । ତତ୍ପରେ ଶର୍ଯ୍ୟାତଙ୍କୁ ଋଷି କହିଲେ :

"ସମ୍ରାଟ ! ତୁମର ବିନମ୍ର ବଚନ ପୁଣି ମୋର କ୍ରୋଧ-ବହ୍ନି ନିର୍ବାପିତ ହୋଇଯାଇଛି । ଏହି ମୁହୂର୍ତ୍ତରୁ ସମସ୍ତ ବିପତ୍ତି ଘୁଞ୍ଚିଗଲା । ମାତ୍ର ମୋର ଗୋଟିଏ ପ୍ରସ୍ତାବ—ସୁକନ୍ୟା ମୋର ଧର୍ମପତ୍ନୀ ହେବାର ଏକମାତ୍ର ଯୋଗ୍ୟା; ତୁମେ ତାହାକୁ ମୋ ହସ୍ତରେ ସମର୍ପଣ କର ।"

ସମ୍ରାଟ ଅତି ଆନନ୍ଦରେ ଋଷିଙ୍କ ପ୍ରସ୍ତାବରେ ସମ୍ମତି ଜଣାଇଲେ । ସେ ଏହାପରେ ସେହି ବନରେ କନ୍ୟାର ପାଣିଗ୍ରହଣ କାର୍ଯ୍ୟ ଶେଷ କଲେ । ସୁକନ୍ୟା ଏବେ କାୟା ନିକଟରେ ଗ୍ରହଣ ପରି ବୃଦ୍ଧ ସ୍ୱାମୀଙ୍କ ଆଶ୍ରମରେ ରହି ତାଙ୍କର ସେବାପରିଚର୍ଯ୍ୟାରେ ଲାଗିରହିଲେ ।

—୨—

ବନକର କଥା······

ପରମରମଣୀୟ ପ୍ରଭାତ ସମୟ । ସୁଗନ୍ଧଭରା ମୃଦୁ ମଳୟ ସଂଚରିତ ହୋଇ ବୃକ୍ଷଲତାର କୋମଳ ପତ୍ରାବଳୀକୁ ଧୀରେ ଧୀରେ ନଚାଉଥାଏ । ବାଳସୂର୍ଯ୍ୟର ରକ୍ତିବର୍ଣ୍ଣ ପୂର୍ବ ଆକାଶରୁ ଋଷିଆଡ଼କୁ ଅବିରଚୂର୍ଣ୍ଣ ବିଞ୍ଚି ଦେଉଥାଏ । ତାହା ଯୋଗୁ ଆଶ୍ରମର ଶୋଭା ଦ୍ୱିଗୁଣ ଜଣାଉଥାଏ ।

ପକ୍ଷୀମାନେ ନୀଡ଼ ଛାଡ଼ି ଏଣେତେଣେ ଉଡ଼ି ସୁମଧୁର ସ୍ୱରରେ ପ୍ରଭାତର ବନ୍ଦନା ଗାଇଲେ । ସୁକନ୍ୟା ଶଯ୍ୟା ତ୍ୟାଗ କରି ପୁଷ୍କର ହ୍ରଦକୁ ସ୍ନାନପାଇଁ ଗମନ କଲେ । ସ୍ନାନ ଶେଷ କରି ଆର୍ଦ୍ର ବସ୍ତ୍ର



ଅଶ୍ୱିନୀକୁମାରଦ୍ୱୟଙ୍କୁ ସୁକନ୍ୟାଙ୍କର ବିନୟପୂର୍ଣ୍ଣ ଅଭିବାଦନ

ପାଳଟିବାପାଇଁ କୂଳକୁ ଉଠିଆସିଲାବେଳେ ଦେଖିଲେ—ସମ୍ମୁଖରେ ଦୁଇଜଣ ଯୁବକ ଆଗନ୍ତୁକ ।

ଲଜ୍ଜାରେ ସୁକନ୍ୟା ଅଧୋମୁଖୀ ହେଲେ । କ୍ଷିପ୍ରତାର ସହିତ ନୂତନ ବସ୍ତ୍ରଖଣ୍ଡି ପିନ୍ଧିପକାଇ ଅତିଥିଙ୍କ ନିକଟକୁ ଗଲେ ଏବଂ ସେ ଦୁହେଁ ଆଶ୍ରମକୁ ଆସିଛନ୍ତି ଭାବି ଅଭ୍ୟର୍ଥନା କରିବାକୁ ଲାଗିଲେ ।

ଆଗନ୍ତୁକଦ୍ୱୟ ସୁକନ୍ୟାଙ୍କ ଅପୂର୍ବ ରୂପଲାବଣ୍ୟ ଦେଖି ଚମତ୍କୃତ ହୋଇଗଲେ । ଜନଶୂନ୍ୟ ଘୋର ବନମଧ୍ୟରେ ଜଣେ ସୁନ୍ଦରୀ ନାରୀର ଅବସ୍ଥାନ ତାଙ୍କ ମନରେ ବିସ୍ମୟ ଉତ୍ପାଦନ କଲା । ତେଣୁ ତାଙ୍କ ମଧ୍ୟରୁ ଜଣେ ପ୍ରଶ୍ନ କଲେ :

"ତୁମେ କିଏ—ଦେବୀ ନା ମାନବୀ ? ଏଠାରେ ଏପରି ଏକାକିନୀ ରହିବାର କାରଣ କଣ ?

ସୁକନ୍ୟା ଉତ୍ତର କଲେ :

"ମୁଁ ମାନବୀ—ସମ୍ରାଟ୍ ଶର୍ଯ୍ୟାତିମାନବଙ୍କର କନ୍ୟା, ଚ୍ୟବନ ମହର୍ଷିଙ୍କର ଧର୍ମପତ୍ନୀ । ନିକଟରେ ଆମର ଆଶ୍ରମ । ଏବେ ଜାଣିପାରେ କି, ଆପଣମାନେ କିଏ ?"

ଅନ୍ୟ ଆଗନ୍ତୁକ ଜଣକ କହିଲେ :

"ଆମେ ଦୁହେଁ ଅଶ୍ୱିନୀକୁମାର—ସ୍ୱର୍ଗରାଜ୍ୟର ବୈଦ୍ୟ ।"

ତହୁଁ ଋଷିପତ୍ନୀ କହିଲେ :

"ତାହାହେଲେ ଆଶ୍ରମକୁ ଚାଲନ୍ତୁ—ଆମର ଆଜି ପରମ ସୌଭାଗ୍ୟର ଦିନ ।"

ସୁକନ୍ୟାଙ୍କର ହୃଦୟ ପରୀକ୍ଷା କରିବାପାଇଁ ଅଶ୍ୱିନୀକୁମାର୍ ଦୁହେଁ କହିଲେ :

"ଆଶ୍ରମକୁ ଯିବାପୂର୍ବରୁ ଆମର ଗୋଟିଏ ବକ୍ତବ୍ୟ ଅଛି । ଚ୍ୟବନ ଅତି ବୃଦ୍ଧ—ଜୀବନର ଶେଷ ଦଶାରେ ପଦାର୍ପଣ କଲେଣି । ତୁମେ ଅତି ସୁନ୍ଦରୀ ପୁଣି ଯୁବତୀ । ତୁମର ପିତା ଏତେ ବିବେକ ଓ ଅଭିଜ୍ଞ ହୋଇ କପରି ତୁମକୁ ଜଣେ ବୃଦ୍ଧହସ୍ତରେ ସମର୍ପିଦେଲେ ? ଭାବିଲେ ବାସ୍ତବରେ ବଡ ଦୁଃଖ ଲାଗେ । ଏହା ତାଙ୍କ ପକ୍ଷରେ ଘୋର ଅନ୍ୟାୟ ନୁହେଁ କି ? ତୁମର ବର୍ତ୍ତମାନ ଜୀବନର ପ୍ରାରମ୍ଭ କହିଲେ ଚଳେ । ଆମ ମତରେ ବୃଦ୍ଧ ଚ୍ୟବନ ଋଷିଙ୍କୁ ଛାଡ଼ି ଜଣେ ଉପଯୁକ୍ତ ବ୍ୟକ୍ତିର ପାଣିଗ୍ରହଣ କରିବା ତୁମ ପକ୍ଷରେ ଉଚିତ । ତାହାହେଲେ ତୁମର ଦୀର୍ଘ ଜୀବନ ସୁଖ ଶାନ୍ତି ଓ ଆନନ୍ଦରେ ଅତିବାହିତ ହୋଇପାରିବ ।"

ଏହି ଅପ୍ରିୟ କଠୋର କଥା ଶୁଣିଲାମାତ୍ରେ ସୁକନ୍ୟା ଅଧୀର ହୋଇଉଠିଲେ । ସେ ସ୍ୱାମୀନିନ୍ଦା ଆଉ ଅଧିକ ନ ଶୁଣିବାପାଇଁ ଅଙ୍ଗୁଳିରେ କର୍ଣ୍ଣଦ୍ୱାର ବନ୍ଦ କରିଦେଲେ । ତାପରେ ଅଶ୍ରୁପୂର୍ଣ୍ଣ ନୟନରେ କହିଲେ :

"ଆପଣମାନେ ଦେବତା ହୋଇ କପରି ଅପବିତ୍ର ପ୍ରସ୍ତାବ ତୁଚ୍ଛକୁ ଆଣୁଛନ୍ତି, ମୁଁ ଆଶ୍ଚର୍ଯ୍ୟ ହେଉଛି । ଏଭଳି ଗର୍ହିତ କଥା ଶୁଣିବା ପତିବ୍ରତା ନାରୀପକ୍ଷରେ ମହାପାପ । ଆପଣମାନେ ଏବେ କ୍ଷାନ୍ତ ହୁଅନ୍ତୁ । ନାରୀ ନିକଟରେ ତାର ସ୍ୱାମୀ ଦେବତାରୁ ବଳି ଅଧିକ ଆରାଧ୍ୟ । ସ୍ୱାମୀର ରୂପ, ବୟସ ପ୍ରଭୃତି ବାହ୍ୟ ବିଷୟ ତାହାର ଆଦୌ ବିଚାରଣୀୟ ନୁହେଁ । ଚ୍ୟବନ ମୋର ପତି—ଜୀବନର ଦେବତା; ମୁଁ ତାଙ୍କର ସହଧର୍ମିଣୀ, ସହଚାରିଣୀ । ତାଙ୍କର ସେବାହିଁ ମୋର ଏକମାତ୍ର ଧର୍ମ ! ତାଙ୍କର ଚରଣପୀଠହିଁ ମୋର ସପ୍ତସ୍ୱର୍ଗ ।"

ସ୍ୱାଧ୍ୱୀ ସୁକନ୍ୟାଙ୍କର ଏ ଉତ୍ତର ଶୁଣି ଅଶ୍ୱିନୀକୁମାରଦ୍ୱୟ କ୍ଷଣକାଳ ଅପ୍ରତିଭ ହେଲେ ଏବଂ ତାଙ୍କ ପତିପରାୟଣତାର ଜ୍ୱଳନ୍ତ ପରିଚୟ ପାଇ ମୁଗ୍ଧ ହୋଇଗଲେ । ତା ପରେ କହିଲେ :

"ସତୀ ସୁକନ୍ୟା ! ତୁମେ ଅତି ପୁଣ୍ୟବତୀ, ତୁମକୁ ପତ୍ନୀରୂପେ ପାଇ ମହର୍ଷି ଚ୍ୟବନ ମଧ୍ୟ ମହା ଭାଗ୍ୟବାନ । ତୁମର ପାତିବ୍ରତ୍ୟ ଭାରତର ଭବିଷ୍ୟତ୍ ନାରୀମାନଙ୍କପାଇଁ ଉଜ୍ଜ୍ୱଳ ଆଦର୍ଶ ହୋଇ ରହିବ । ତୁମେ ବହୁକାଳ ପତିସୁଖ ଭୋଗ କର, ଏହାହିଁ ଆମର କାମନା । ଏବେ ଚାଲ, ଆଶ୍ରମରେ ମହର୍ଷିଙ୍କୁ ଦର୍ଶନ କରିବା ।"

ସୁକନ୍ୟା ଆଶ୍ରମାଭିମୁଖିନୀ ହେଲେ । କିଛି ସମୟପରେ ଅଶ୍ୱିନୀକୁମାର ଯାଇ ଚ୍ୟବନ ମହର୍ଷିଙ୍କୁ ସାକ୍ଷାତ କଲେ । ଆଳାପ ସାରି ସ୍ୱର୍ଗବୈଦ୍ୟଦ୍ୱୟ ଚ୍ୟବନଙ୍କୁ ସଙ୍ଗରେ ନେଇ ପୁଷ୍କର ହ୍ରଦକୁ ଆସିଲେ ଏବଂ ତିନିହେଁଯାକ ତାହାର ପବିତ୍ର ଜଳରେ ତିନି ଥର ନିମଜ୍ଜିତ ହେଲେ । ବିଚିତ୍ର କଥା, ଶେଷ ଥର ଜଳମଧ୍ୟରୁ ଉତ୍‌ଥିତ ହେବାମାତ୍ରେ ତିନିଙ୍କର ରୂପ ଏକାପ୍ରକାର ଦେଖାଗଲା । ଚ୍ୟବନଙ୍କର ବାର୍ଦ୍ଧକ୍ୟ ଓ ଜୀର୍ଣ୍ଣଶୀର୍ଣ୍ଣତା କେଉଁଆଡ଼େ ଅନ୍ତର୍ହିତ ହେଲା । ସେ ଠିକ ଅଶ୍ୱିନୀକୁମାରଙ୍କ ପରି ଏକ ସୁନ୍ଦର ବଳିଷ୍ଠ ଯୁବକରେ ପରିଣତ ହୋଇଗଲେ ।

ଏବେ ତିନିହେଁ ଆଶ୍ରମକୁଟୀରକୁ ଏକତ୍ର ପ୍ରତ୍ୟାବୃତ୍ତ ହେଲେ । ଏଠାରେ ମଧ୍ୟ ଅଶ୍ୱିନୀକୁମାର ସୁକନ୍ୟାଙ୍କ ଆଗରେ କଠୋର ପରୀକ୍ଷାର ସମ୍ମୁଖୀନ କରାଇଲେ । ତିନୋଟିଯାକ ରୂପ ତ ଅଶ୍ୱିନୀକୁମାରଙ୍କ ପରି, ସୁକନ୍ୟା ତାଙ୍କ ମଧ୍ୟରୁ ନିଜ ସ୍ୱାମୀଙ୍କୁ ଚିହ୍ନିବେ କିପରି ?

ମାତ୍ର ସଙ୍ଗେ ସଙ୍ଗେ ସୁକନ୍ୟା ସେହି ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଗଲେ । ପାତିବ୍ରତ୍ୟ ପୁଣ୍ୟ ବଳରୁ ସେ ଅତି ସହଜରେ ଚ୍ୟବନଙ୍କୁ ଚିହ୍ନିପାରିଲେ ଏବଂ ଅଶ୍ୱିନୀକୁମାରଦ୍ୱୟଙ୍କୁ ବହୁ ସାଧୁବାଦ କରି ଧାଇଁଯାଇ ସ୍ୱାମୀଙ୍କ ଚରଣ ସ୍ପର୍ଶ କଲେ ।

ଏହିରୂପେ ବୃଦ୍ଧ ଚ୍ୟବନ ମହର୍ଷିଙ୍କୁ ନବଯୌବନ ପ୍ରଦାନ କରି ଦେବବୈଦ୍ୟ ଦୁହେଁ ସ୍ୱର୍ଗପୁରୀକୁ ଫେରିଗଲେ ।

— ୩ —

ବାର୍ଦ୍ଧକ୍ୟର ଅଦ୍ଭୁତ ରୂପାନ୍ତର......

ମହର୍ଷି ଚ୍ୟବନଙ୍କ ଯୌବନଲାଭର ବିଚିତ୍ର ବୃତ୍ତାନ୍ତ ବିଦ୍ୟୁତ୍‌ଗତିରେ ସମଗ୍ର ଦେଶରେ ବ୍ୟାପିଗଲା । ସମ୍ରାଟ ଶର୍ଯ୍ୟାତି ତାହା ଶୁଣି ଆଶ୍ରମରେ ଆସି ଉପଗତ ହେଲେ । କେତୋଟି ଦିନ ମହାଆନନ୍ଦରେ ଆଶ୍ରମରେ ଅତିବାହିତ କରି ସେ କନ୍ୟା ଓ ଜାମାତାଙ୍କୁ ନିଜ ରାଜପୁରୀକୁ ନେଇଗଲେ ।

ଚ୍ୟବନଙ୍କ ଅନୁରୋଧରେ ଶର୍ଯ୍ୟାତି ଏକ ବିରାଟ ଯଜ୍ଞ ଆରମ୍ଭ କଲେ । ନାନା ଦେଶରୁ ଋଷି, ଦ୍ୱିଜ, ରାଜା, ମହାରାଜାମାନେ ନିମନ୍ତ୍ରିତ ହୋଇ ଯଜ୍ଞସଭାରେ ଯୋଗଦେଲେ । ଦେବତାମଣ୍ଡଳୀ ମଧ୍ୟ ଆମନ୍ତ୍ରଣ ପାଇ ସ୍ୱତନ୍ତ୍ର ମଣ୍ଡପରେ ଆସି ଉପବେଶନ କଲେ ।

ଆଜି ଯଜ୍ଞର 'ସୋମ ଦିବସ' । କେବଳ ଦେବତାମାନେ ସୋମପାନର ଅଧିକାରୀ । ତେଣୁ ସୋମରସ ପୂର୍ଣ୍ଣ ପାତ୍ରସବୁ ପ୍ରତ୍ୟେକ ଦେବତାଙ୍କୁ ସମର୍ପଣ କରାଗଲା । ଏହି ସମୟରେ ଚ୍ୟବନ ନିଜେ ସୋମପାତ୍ର ନେଇ ଅଶ୍ୱିନୀକୁମାରଙ୍କୁ ଅର୍ପଣ କରିବାକୁ ଉଦ୍ୟତ ହେଲେ ।

ଗୁହୁଁ ଗୁହୁଁ ଦେବତାମାନଙ୍କ ମଧ୍ୟରେ ଘୋର ବିଶୃଙ୍ଖଳା ଉପସ୍ଥିତ ହେଲା । ଅଶ୍ୱିନୀକୁମାରଙ୍କୁ ସୋମପାନ ଦିଆଯାଉଥିବାର ଦେଖି ସେମାନେ ଉତ୍ତ୍ୟକ୍ତ ହୋଇ ଗୋଳମାଳ ସୃଷ୍ଟି କଲେ । ଦେବମଣ୍ଡଳୀର ନେତା ଇନ୍ଦ୍ର ଗର୍ଜନ କରି କହିଲେ :

"ହେ ଚ୍ୟବନ ମହର୍ଷି ! ତୁମେ ଆଜି ଏ କି ନୂଆ ପ୍ରଥା ସୃଷ୍ଟି କରିବାକୁ ଯାଉଛ ? ଅଶ୍ୱିନୀକୁମାର ଆମ୍ଭମାନଙ୍କର ବୈଦ୍ୟ ସତ, କିନ୍ତୁ ସେ ପତିତ ହୋଇଥିବାରୁ କେବେହେଲେ ଆମ ମଣ୍ଡଳୀର ଅନ୍ତର୍ଭୁକ୍ତ ନୁହନ୍ତି । ତେଣୁ 'ସୋମ ଦିବସ'ରେ ସେ କଦାପି ସୋମପାନର ଅଧିକାରୀ ନୁହନ୍ତି । ତୁମେ ତାଙ୍କୁ ସୋମପାନ ଅର୍ପଣ କରିବାକୁ ଯାଇ ଆମ୍ଭମାନଙ୍କର ଉଚ୍ଚ ସମ୍ମାନକୁ ଅବମାନିତ କରୁଛ । କେବଳ ତାଙ୍କ ଅନୁଗ୍ରହରୁ ତୁମେ ଯୌବନ ଲାଭ କରିଥିବାରୁ ଆଜି ଏପରି ପକ୍ଷପାତିତା ଆଚରଣ କରୁଛ— ନୁହେଁ କି ?

ଦେବରାଜଙ୍କ କଥା ଶୁଣିଲା ପରେ ଚ୍ୟବନ ଦେବମଣ୍ଡପ ସମ୍ମୁଖକୁ ଯାଇ କହିଲେ :

"ହେ ପୂଜ୍ୟ ଦେବତାଗଣ ! ମୋର ଉପକାରୀ ଅଶ୍ୱିନୀ-କୁମାରଙ୍କ ପକ୍ଷ ନେଇ ମୁଁ କଦାପି କହୁନାହିଁ—କହୁଛି ସମଗ୍ର ସୃଷ୍ଟିର କଲ୍ୟାଣପାଇଁ । ଶରୀର ହିଁ ଧର୍ମର ଆଦ୍ୟ ସାଧନ । ଶରୀରର କ୍ଷତି ଘଟିଲେ ଆଧ୍ୟାତ୍ମଚିନ୍ତା ଅସମ୍ଭବ । ପ୍ରକୃତରେ ଅଶ୍ୱିନୀକୁମାରଙ୍କ ପରି ପରଦୁଃଖକାତର ଦେବତା କେହି ହେଲେ ମୋ ଦୃଷ୍ଟିକୁ ଦେଖାଯାଉ ନାହାନ୍ତି । ସେ ନ ଥିଲେ କି ସ୍ୱର୍ଗ, କି ମର୍ତ୍ତ୍ୟ, ସର୍ବତ୍ର ହାହାକାର ପଡ଼ିଯାନ୍ତା । ଆପଣମାନଙ୍କର ମନେ ରଖିବା ଉଚିତ ଯେ, କେବଳ ଆୟୁର୍ବେଦ ବିଦ୍ୟାହିଁ ସୃଷ୍ଟିର ସୌନ୍ଦର୍ଯ୍ୟରକ୍ଷା କରିବାକୁ

ସମର୍ଥ । ତେଣୁ ଏହାର ସ୍ରଷ୍ଟା ଅଶ୍ୱିନୀକୁମାର ନିଶ୍ଚୟ ଆପଣମାନଙ୍କ ସହିତ ଆଜ ସୋମରସ ପାନର ଅଧିକାରୀ ।"

ଚ୍ୟବନଙ୍କର ଏ ଯୁକ୍ତିଯୁକ୍ତ କଥା ଶୁଣି କୌଣସି ଦେବତା ପ୍ରତିବାଦ କରିବାକୁ ଭରସି ପାରିଲେ ନାହିଁ । ଅଧିକନ୍ତୁ ସଭାସ୍ଥ ସମସ୍ତ ଋଷି ବିଶ୍ୱର ମଙ୍ଗଳପାଇଁ ଚ୍ୟବନଙ୍କୁ ସମର୍ଥନ କରିବାକୁ ଲାଗିଲେ ।

ଇନ୍ଦ୍ର ନିରୁପାୟ ହୋଇ ନୀରବ ରହିଲେ; ମାତ୍ର ସେ କ୍ରୋଧାନ୍ଧ ହୋଇଥିବାରୁ ଚ୍ୟବନ ଅଶ୍ୱିନୀକୁମାରଙ୍କୁ ସୋମପାତ୍ର ଦେବାକୁ ଗଲାବେଳେ ବଜ୍ର ପେଷି ତାଙ୍କ ହସ୍ତ କାଟିଦେବାକୁ ବସିଲେ । ଏହା ଜାଣି ଚ୍ୟବନ ନିଜର ଅଦ୍ଭୁତ ବିଦ୍ୟାବଳରେ ଇନ୍ଦ୍ରଙ୍କ ହସ୍ତକୁ ଅଚଳ କରାଇଦେଲେ । ଫଳରେ ଇନ୍ଦ୍ର ଆଉ ବଜ୍ରାସ୍ତ୍ର ପ୍ରୟୋଗ କରିପାରିଲେ ନାହିଁ ।

ତଦନନ୍ତର ଚ୍ୟବନ ଯଜ୍ଞାଗ୍ନିରେ ଆହୁତି ପ୍ରଦାନ କଲେ । ଆଶ୍ଚର୍ଯ୍ୟ କଥା, ସଙ୍ଗେ ସଙ୍ଗେ ସେହି ଅଗ୍ନି ମଧ୍ୟରୁ 'ମଦ' ନାମକ ଏକ ମହାକାୟ ବିକଟ ଦୈତ୍ୟ ନିର୍ଗତ ହେଲା । ମହର୍ଷିଙ୍କ ଆଦେଶରେ ସେହି ବିରାଟ ଦୈତ୍ୟଟି ମୁଖ ବ୍ୟାଦାନ କରି ଇନ୍ଦ୍ରଙ୍କୁ ଗ୍ରାସ କରିବାକୁ ବାହାରିଲା । ଇନ୍ଦ୍ର ଭୟରେ କମ୍ପିତ ହୋଇ ବ୍ୟାକୁଳ ପ୍ରାଣରେ ଧାଇଁ ଧାଇଁ ଆସି ଚ୍ୟବନଙ୍କ ନିକଟରେ ଶରଣ ପଶିଲେ ।

ଦେବରାଜଙ୍କ ଦୁର୍ଦ୍ଦଶା ଦେଖି ଚ୍ୟବନଙ୍କ ହୃଦୟରେ ଦୟାଭାବ ସଞ୍ଚାର ହେଲା । ସେ 'ମଦ'କୁ ଉକ୍ତ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ଆଦେଶ ଦେଲେ । ସଭାର ସମସ୍ତ କୋଳାହଳ ତତ୍‌କ୍ଷଣାତ୍ ରହିତ ହୋଇଗଲା । ଦେବତାମାନଙ୍କ ଗହଣରେ ଅଶ୍ୱିନୀକୁମାରଦ୍ୱୟ ମଧ୍ୟ ସମ୍ମାନର ସହିତ ସୋମରସ ପାନ କଲେ ।

ଯେଉଁ ଉଦ୍ଦେଶ୍ୟରେ ଚ୍ୟବନ ଏହି ଯଜ୍ଞଟି କରାଇଥିଲେ, ତାହା ସଫଳ ହେବାରୁ ଏବେ ଯଜ୍ଞକାର୍ଯ୍ୟ ଯଥାଶାନ୍ତ ଉଦ୍‌ଯାପିତ ହେଲା । ଆମନ୍ତ୍ରିତ ଋଷି, ଦ୍ୱିଜ, ରାଜା, ମହାରାଜା, ଦେବତା ସମସ୍ତେ ପରମସନ୍ତୋଷରେ ନିଜ ନିଜ ଆବାସକୁ ପ୍ରତ୍ୟାଗତ ହେଲେ ।

ଚ୍ୟବନ ମହର୍ଷି ଯେଉଁ ବିଦ୍ୟାବଳରେ ଯୌବନଶ୍ରୀ ଭୋଗ କରି ଦୀର୍ଘଜୀବନ ଲାଭ କଲେ, ସେହି ବୈଦ୍ୟଶାସ୍ତ୍ର ଆଜିପର୍ଯ୍ୟନ୍ତ ଲୋକସମାଜର ପ୍ରଭୂତ କଲ୍ୟାଣ ସାଧନ କରୁଛି । ଏଥିପାଇଁ ମହାତ୍ମା ଚ୍ୟବନ ମାନବଜାତିର ପୂଜ୍ୟ ।

— — —

# ସନ୍ତାନକାମୀ ତପସ୍ୱୀ

## ( ବେଦ ଗଳ୍ପ )

—୧—

ପିତାମାତାର ଏକମାତ୍ର ସନ୍ତାନ······

ନାମ ତାର 'ସୋଭରି' । ସୋଭରିର ଜନ୍ମ କାଣ୍ୱ ବଂଶରେ । ତେଣୁ ବେଦରେ ତାହାର ନାମ 'ସୋଭରି କାଣ୍ୱ' ବୋଲି ବର୍ଣ୍ଣିତ ହୋଇଅଛି ।

କୋଳର ପିଲା ହୋଇ ସୋଭରି ସ୍ନେହାସ୍ତରଣଶଯ୍ୟାରେ ବାଲ୍ୟକାଳ କଟାଇଲା । କୁଳର ପ୍ରଦୀପ ହୋଇଥିବାରୁ ପିତାମାତା ତାହାର ଲାଳନପାଳନରେ ନିଜକୁ ସତତ ନିୟୋଜିତ ରଖିଥାନ୍ତି ।

ବାଲ୍ୟକାଳରେ ବିଦ୍ୟାର୍ଜ୍ଜନ ସଙ୍ଗେ ସଙ୍ଗେ ଧର୍ମଧନ ସଞ୍ଚୟ କରିବା ସେକାଳରେ ମହତ୍ତର ମନ୍ତ୍ରରୂପେ ପରିଗଣିତ ହେଉଥିଲା । ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ସୋଭରି ପିତୃନିର୍ଦ୍ଦେଶରେ ବିଦ୍ୟାଶିକ୍ଷାପ୍ରତି ଆକୃଷ୍ଟ ହେଲା । ଅଳ୍ପ କାଳ ମଧ୍ୟରେ ସେ ବେଦ, ବେଦାନ୍ତ ପ୍ରଭୃତି କଠିନ ଶାସ୍ତ୍ର ଆୟତ୍ତ କରି ବହୁ ଜ୍ଞାନର ଅଧିକାରୀ ହୋଇପାରିଲା । ସେ ଯେତିକି ଜ୍ଞାନାମୃତ ପାନ କଲା, ସଂସାରପ୍ରତି ତାର ସେତିକି ବିତୃଷ୍ଣା ଓ ଅନାସ୍ଥାଭାବ ବର୍ଦ୍ଧିତ ହେଲା ।

ଯଥାକାଳରେ ସେ ଯୌବନ-ସୀମାରେ ପଦାର୍ପଣ କଲା । ପିତାମାତା ତାହାକୁ ବିବାହ-ବନ୍ଧନରେ ଆବଦ୍ଧ କରି ତାହାଉପରେ

ଗୃହସଂସାରର ଭାର ଅର୍ପଣ କରିଦେବାପାଇଁ ମନଃସ୍ଥ କଲେ । ଏହା ଜାଣିପାରି ସୋଭରି ପିତାମାତାଙ୍କୁ କହିଲେ :

"ଏହି ସଂସାର ଅନିତ୍ୟ ଓ ଦୁଃଖପୂର୍ଣ୍ଣ ଅଟେ । ଅନନ୍ତ କାଳ-ସମୁଦ୍ରରେ ମନୁଷ୍ୟଜୀବନ ସାମାନ୍ୟ ଜଳବୁଦ୍‌ବୁଦ ସଦୃଶ କ୍ଷଣସ୍ଥାୟୀ । ଅତି ଆକସ୍ମିକଭାବରେ ତାର ଉଦ୍‌ଭବ ଏବଂ ଅତି ଆକସ୍ମିକଭାବରେ ତାର ବିଲୟ । ବେଦାଧ୍ୟୟନରୁ ମୁଁ ଜାଣିଛି, ତପସ୍ୟାଦ୍ୱାରା ହିଁ ମନୁଷ୍ୟ ନିତ୍ୟ-ସୁଖର ସନ୍ଧାନ ଲାଭ କରିପାରେ । ଯେଉଁ ପରମ୍ପୁରୁଷ ମୋତେ ଜନ୍ମ ଦେଇ ପୃଥିବୀକୁ ପ୍ରେରଣ କରିଛନ୍ତି, ମୁଁ ତପୋବଳରେ ତାଙ୍କୁ ଦର୍ଶନ କରି ପୁଣି ତାଙ୍କରି ନିକଟକୁ ଫେରିଯିବି — ଏହାହିଁ ମୋ ଜୀବନର ମୂଲ୍ୟ । ସଂସାରୀ ହୋଇ ଗୃହଜଞ୍ଜାଳରେ ଲିପ୍ତ ହେଲେ ମନୁଷ୍ୟର ଜୀବନ-ପଦ୍ମ ସହଜରେ ବିକଶିତ ହୋଇପାରେ ନାହିଁ । ତେଣୁ ମୋତେ ବିବାହ-ପାଶରେ ବାନ୍ଧିବାକୁ ଅଯଥା ଶକ୍ତିକ୍ଷୟ କରନ୍ତୁ ନାହିଁ ।"

ପିତାମାତା ବହୁତ ବୁଝାଇଲେ, କୁଳରକ୍ଷାପାଇଁ ବହୁ ଉପଦେଶ ଦେଲେ, ମାତ୍ର ସୋଭରି ନିଜ ପ୍ରତିଜ୍ଞାରେ ଅଟଳ ରହିଲା । ଶେଷରେ ଗୃହ ତ୍ୟାଗ କରି ବନେ ଅରଣ୍ୟକୁ ପଳାୟନ କଲା । ଆହା, ବନଗର୍ଭଟି କି ମନୋରମ ! ସଂସାରର କୋଳାହଳ, ଗହଳଚହଳ ଟିକିଏ ହେଲେ ନାହିଁ । ତରୁ-ଲତା, ଫୁଲ-ଫଳ, ଘାସ-କୁଶ, ପାହାଡ଼-ଝରଣା, ଶୁକ-ସାରିକା, ପିକ-ମୟୂର, ମୃଗ-ସମ୍ବର —ଏମାନଙ୍କୁ ଦେଖି ସୋଭରିର ପ୍ରାଣ ଅପାର ପୁଲକରେ ପୂର୍ଣ୍ଣ ହୋଇଗଲା । ସବୁଗୁଡ଼ିକ କେଡ଼େ ସୁନ୍ଦର, ସରଳ, ହସହସ ! ସତେ ଯେପରି ପରମେଶ୍ୱରଙ୍କ ଅବାରିତ ସ୍ନେହ-ବାରି ଏହି ନିର୍ଜନ ସ୍ଥଳୀଟିକୁ ଶୀତଳ ଓ ମନୋଜ୍ଞ କରି ରଖିଛି !



ବନମଧ୍ୟରେ ତାପସ ସୋଭର

ଏହାହିଁ ତପଃସାଧନାର ପ୍ରକୃଷ୍ଟ ସ୍ଥାନ । ସୋଭରି ଗୋଟିଏ ପର୍ଣ୍ଣକୁଟୀର ରଚନା କରି ସେଠାରେ ଏକାକୀ ବାସ କଲେ ଏବଂ ପ୍ରତ୍ୟହ ଭଗବାନଙ୍କ ନାମ ଜପ କରିବାକୁ ଲାଗିଲେ । ଦିନକୁ ଦିନ ତାର ମନ ନିର୍ମଳ ଓ ପ୍ରଶାନ୍ତ ହୋଇଉଠିଲା । କିନ୍ତୁ ଦିନପରେ ସେ କଠୋର ତପସ୍ୟାରେ ନିମଗ୍ନ ହୋଇ ରହିଲେ ।

ବହୁ ବର୍ଷ ଅତୀତ ହେଲାପରେ ସୋଭରି ତପସ୍ୟାର ଫଳ ଲାଭ କରି ତାର ମାନବଜନ୍ମକୁ ସାର୍ଥକ କଲେ । ଏଣିକି ସେ ଆଉ ସୋଭରି ନୁହେଁ—ମହର୍ଷି ସୋଭରି କାଣ୍ୱ ।

ବିଭିନ୍ନ ଅଞ୍ଚଳର ଧର୍ମ ଜ୍ଞାନ-ପିପାସୁ ବ୍ୟକ୍ତିମାନେ ମହର୍ଷି ସୋଭରିଙ୍କ ନିକଟକୁ ଧାଇଁଲେ; ପୁଣି ଅନେକ ଶିଷ୍ୟତ୍ୱ ଗ୍ରହଣ କରି ତାଙ୍କ ଆଶ୍ରମରେ ରହିଲେ । ଦିନୁଁ ଦିନୁଁ ଆଶ୍ରମର ପରିସର ବହୁ ଗୁଣ ବୃଦ୍ଧି ପାଇ ଜନବସତିଠାରୁ ମଧ୍ୟ ଆହୁରି ଲୋକବହୁଳ ହୋଇଗଲା । ମହର୍ଷିଙ୍କ ଗୁଣଗରିମା ଓ ତତ୍ତ୍ୱବ୍ୟାଖ୍ୟାନର ପ୍ରଶସ୍ତିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା ।

—୨—

କାଳ-ସ୍ରୋତ କ୍ଷିପ୍ର ଗତିରେ ବହିଗଲା······

ମହର୍ଷି ସୋଭରିଙ୍କ ଅଙ୍ଗରୁ ଯୌବନର ସମସ୍ତ ଜ୍ୟୋତି ଲିଭିଯାଇଛି । ଏବେ ଶରୀରରେ ବାର୍ଦ୍ଧକ୍ୟର ପୂର୍ଣ୍ଣ ରାଜତ୍ୱ । ଚର୍ମ ଲୋଳିତ, ଜଟା ଓ ଶ୍ମଶ୍ରୁରାଜି ଶରତର ମେଘସଦୃଶ ଶୁକ୍ଳ । ଅବୟବସମୂହର ଶକ୍ତି ପ୍ରାୟ ଅର୍ଦ୍ଧଲୁପ୍ତ । ଏସମସ୍ତ ସତ୍ତ୍ୱେ ମହର୍ଷିଙ୍କର ମୁଖ ଚିରପ୍ରଫୁଲ୍ଲ, ଅନ୍ତର ନିତ୍ୟପୁଲକିତ ।

ଗୋଟିଏ ଦିବସର ଅବିସ୍ମରଣୀୟ ଘଟନା । ମନୋହର ପ୍ରଦୋଷକାଳ । ସୂର୍ଯ୍ୟଦେବ ଅସ୍ତାଚଳଚୂଡ଼ାବଲମ୍ବୀ ହେବାପାଇଁ

ଅଳ୍ପମାତ୍ର ସମୟ ଅବଶିଷ୍ଟ ଥାଏ । ପ୍ରତୀଚୀ ଆକାଶ ସ୍ୱର୍ଣ୍ଣାଭ ରଶ୍ମିରେ ରଙ୍ଗିତ ହୋଇ ଚତ୍ପଟ ଭଲ ଶୋଭା ପାଉଥାଏ । ଗହଳ ତମାଳ-କୁଞ୍ଜମଧ୍ୟରୁ ବିହଙ୍ଗମାନଙ୍କର ଲଳିତ କାକଳି ଭାସିଆସୁଥାଏ ।

ସମ୍ମୁଖରେ ଧୀରସ୍ରୋତା ତଟିନୀ । ମହର୍ଷି ସୋଭରି ତାହାର ତଟଉପରେ ବସି ସାନ୍ଧ୍ୟ ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣରେ ତନ୍ମୟ ଥାଆନ୍ତି । ନଦୀଟି କଳକଳ ନାଦରେ ସଙ୍ଗୀତ ଗାଇ ଗାଇ ନୃତ୍ୟ-ଭଙ୍ଗୀରେ ବହିଚାଲିଥାଏ । ପ୍ରଦୋଷବାୟୁ ନଦୀଗର୍ଭରେ ପଶି କ୍ଷୁଦ୍ର କ୍ଷୁଦ୍ର ଊର୍ମିମାନଙ୍କୁ ଅଧିକ ନୃତ୍ୟଚଞ୍ଚଳ କରିଦେଉଥାଏ । ବାୟୁ ଓ ତରଙ୍ଗର ସେହି ନୃତ୍ୟଲୀଳା ସୋଭରିଙ୍କୁ ବଡ଼ କୌତୁକାବହ ବୋଧ ହେଲା ।

ଏହି ସମୟରେ ଗୋଟିଏ ମତ୍ସ୍ୟପରିବାର ମହର୍ଷିଙ୍କ ଦୃଷ୍ଟିକୁ ସହସା ଆକର୍ଷଣ କଲା । ପରିବାରଟିମଧ୍ୟରେ ଗୋଟିଏ ବୃହତ୍ ମତ୍ସ୍ୟ, ତାହାର ପାର୍ଶ୍ୱରେ ସ୍ତ୍ରୀମତ୍ସ୍ୟ ଏବଂ ସେ ଦୁହିଁଙ୍କୁ ବେଷ୍ଟନ କରି ଅନେକ-ଗୁଡ଼ିଏ ମତ୍ସ୍ୟଶିଶୁ । ସନ୍ତାନଗୁଡ଼ିକ ପିତାମାତାଙ୍କର ଚତୁର୍ଦ୍ଦିଗରେ ସନ୍ତରଣ କରି ମହାଆନନ୍ଦରେ ସ୍ୱଚ୍ଛନ୍ଦ କ୍ରୀଡ଼ା କରୁଥାନ୍ତି ।

ମହର୍ଷି ଏକଧ୍ୟାନରେ ସେମାନଙ୍କୁ ବହୁତ ସମୟ ଅନାଇ-ରହିଲେ । ତରଙ୍ଗର ଲଘୁ ଆଘାତରେ ମତ୍ସ୍ୟଗୁଡ଼ିକ କ୍ରମେ ତଟପାର୍ଶ୍ୱକୁ ଚାଲି ଆସିଲେ । ସେମାନଙ୍କୁ ଅଧିକତର ନିକଟରେ ଦେଖି ସୋଭରିଙ୍କ ମନରେ ଭାବାନ୍ତର ଜାତ ହେଲା । ସେ ଭାବିଲେ :

"ଆହା, କେଡ଼େ ସୁଖୀ ଏହି ମତ୍ସ୍ୟପରିବାରଟି ! ପୁତ୍ରକନ୍ୟା ଓ ପତ୍ନୀକୁ ଘେନି ମତ୍ସ୍ୟଟି କେତେ ଆନନ୍ଦରେ କାଳଯାପନ କରୁଛି ! ନିଜ ସନ୍ତାନସନ୍ତତିଙ୍କ ଜଳକ୍ରୀଡ଼ା ଦେଖି ପ୍ରାଣରେ କେତେ ସୁଖ

ଅନୁଭବ କରୁଛ ! ହାୟ, ମୁଁ ଜୀବନରେ ଏଭଳି ବାତ୍ସଲ୍ୟସୁଖର ମଧୁରତା ଥରେ ହେଲେ ଆସ୍ୱାଦନ କରିପାରିଲି ନାହିଁ !"

ମାରବରେ ଏହିପରି ଚିନ୍ତା କରୁଥିଲାବେଳେ ହଠାତ୍ ପିତା-ମାତାଙ୍କ କଥା ତାଙ୍କର ସ୍ମୃତିପଥାରୂଢ ହେଲା । ବିବାହ କରିବା ପାଇଁ ସେ ଦୁହେଁ ଯେତେ ଉପଦେଶ ଦେଇଥିଲେ, ଗୋଟି ଗୋଟି ହୋଇ ସେ ସମସ୍ତ ସୋଭରିଙ୍କ ମନରେ ଆଲୋଡ଼ନ ସୃଷ୍ଟି କଲା । ଏବେ ସେ ଭରି ପିତାମାତାଙ୍କ ଅପୂର୍ଣ୍ଣ ଆଶାକୁ ପୂର୍ଣ୍ଣ କରିବାପାଇଁ ସଂକଳ୍ପ କଲେ ।

— ୩ —

ସନ୍ତାନ-ବତ୍ସଳତାର ଅସୀମ ପ୍ରଭାବ······

ମହର୍ଷି ସେ ଭରି ସେହି ପ୍ରଭାବରେ ନିଜର ମହତ୍ତର ଜୀବନକୁ ସେତେବେଳେ ବିସ୍ମୃତ ହୋଇଗଲେ । ସାମାନ୍ୟ ମତ୍ସ୍ୟପରିବାରଟି ତାଙ୍କ ଜୀବନର ଗତିକୁ ସଂପୂର୍ଣ୍ଣ ପରିବର୍ତ୍ତିତ କରିଦେଲା । ସେ ସଂସାରୀ ହୋଇ କିଛି କାଳ ବାତ୍ସଲ୍ୟସୁଖ ଉପଭୋଗ କରିବାପାଇଁ ଉଦବଗ୍ନ ହୋଇଉଠିଲେ ।

ପରଦିନ ସୋଭରି ଆଶ୍ରମ ତ୍ୟାଗ କରି ରାଜପ୍ରାସାଦ ଉଦ୍ଦେଶ୍ୟରେ ଯାତ୍ରା କଲେ । ଗୋଟିଏ ବା ଦୁଇଟି ନୁହେଁ, ବହୁ ରାଜାଙ୍କ ନିକଟକୁ ଯାଇ ସେ ନିଜର ବିବାହ ଅଭିଳାଷ ପ୍ରକାଶ କଲେ । ମାତ୍ର ଦୁଃଖର କଥା, ତାଙ୍କର ଅତିବାର୍ଦ୍ଧକ୍ୟ ଯୋଗୁଁ କେହି ତାଙ୍କୁ କନ୍ୟା ସଂପ୍ରଦାନ କରିବାକୁ ଇଚ୍ଛୁକ ହୋଇପାରିଲେ ନାହିଁ ।

ଅବଶେଷରେ ସୋଭରି ଯାଇ 'ସପ୍ତସିନ୍ଧୁ' ରାଜ୍ୟରେ ଉପସ୍ଥିତ ହେଲେ । ସେତେବେଳେ 'ତ୍ରସଦସ୍ୟୁ' ସପ୍ତସିନ୍ଧୁର

ନିରପନ୍ତ ଥାଆନ୍ତି । ପ୍ରଜାଗଣ ତାହାଙ୍କ ସୁରୁବଂଶର ସମୁଜ୍ଜ୍ୱଳ ହୀରକ ବୋଲି ଅଜସ୍ର ପ୍ରଶଂସା କରୁଥିଲେ । ଦେବଦ୍ୱିଜ-ଋଷିଙ୍କଠାରେ ହସଦୃସ୍ୟୁଙ୍କର ଅଗାଧ ଭକ୍ତି ।

ମହର୍ଷି ସୋଭରି ଶୁଣିଲେ, ହସଦୃସ୍ୟୁଙ୍କର ପଚାଶଟି ରୂପବତୀ ଯୁବତୀ କନ୍ୟା ଅଛନ୍ତି ଏବଂ ସେ ସମସ୍ତେ ଅବିବାହିତା । ସୋଭରି ଆଶାୟୀ ପ୍ରାଣ ଘେନି ହସଦୃସ୍ୟୁଙ୍କ ରାଜସଭାରେ ଉପଗତ ହେଲେ । ମହର୍ଷିଙ୍କ ତପୋବଳର ମହିମା ପୂର୍ବରୁ ରାଜା ଉତ୍ତମରୂପେ ଜାଣିଥିଲେ । ତେଣୁ ସେ ଧାଇଁ ଯାଇ ତାହାଙ୍କୁ ସସମ୍ଭ୍ରମରେ ଅଭିବାଦନ କରିଆଣି ଯଥୋଚିତ ଆସନ ପ୍ରଦାନ କଲେ ଏବଂ ବିଧିବିହିତ ରୀତିରେ ପାଦପୂଜା କରିସାରି ବଦ୍ଧାଞ୍ଜଳି ହୋଇ ପ୍ରଶ୍ନ କଲେ :

"ମହର୍ଷି ! ଆପଣଙ୍କ ଚରଣରେଣୁ ପାଇ ଆଜି ମୁଁ ଧନ୍ୟ ହେଲି । ମୋର ରାଜପୁରୀ ମଧ୍ୟ ପବିତ୍ର ହେଲା । ଏବେ ପ୍ରକାଶ କରନ୍ତୁ, କି ଉଦ୍ଦେଶ୍ୟରେ ଏହି ରାଜସଭାକୁ ଆଗମନ କରିଛନ୍ତି ? ଆପଣଙ୍କ ଆଦେଶ ପାଳନ କରିବାକୁ ମୁଁ ପ୍ରସ୍ତୁତ ହୋଇ ରହିଛି ।"

ରାଜାଙ୍କର ବିନୟମିଶ୍ରିତ ସୌଜନ୍ୟରେ ମୁଗ୍ଧ ହୋଇଯାଇ ମହର୍ଷି ସଙ୍ଗେ ସଙ୍ଗେ କହିଲେ :

"ହେ ନରେଶ ! ମୋର ଏବେ ସଂସାରୀ ହୋଇ ସନ୍ତାନସୁଖ ଭୋଗ କରିବାକୁ ବଳବତୀ ଇଚ୍ଛା ହୋଇଅଛି । ତୁମର ତନୟାମାନଙ୍କ ମଧ୍ୟରୁ ଗୋଟିକୁ ମୋତେ ପ୍ରଦାନ କରି ମୋର ମନବାଞ୍ଛା-ପୂରଣରେ ସାହାଯ୍ୟ କର । କେବଳ ଏହି ଉଦ୍ଦେଶ୍ୟରେ ମୁଁ ଆଜି ତୁମ ନିକଟକୁ ଆସିଅଛି ।"

ତ୍ରସଦ୍ଦସ୍ୟୁଙ୍କ ମସ୍ତକରେ ସତେ ଯେପରି ବଜ୍ରପାତ ହେଲା । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଗଲା । ଅତି ବୃଦ୍ଧ ମହର୍ଷିଙ୍କ ହସ୍ତରେ କିପରି ଲବଣୀପିତୁଳା କନକପ୍ରତିମା କନ୍ୟାଟିଏ ସମର୍ପଣ କରିବେ ? କିଛିକ୍ଷଣ ଚିନ୍ତା କରି ଶେଷରେ ସେ ଉତ୍ତର ଦେଲେ :

"ମହର୍ଷି ! କ୍ଷତ୍ରିୟକୁଳର ରାଜକନ୍ୟା ନିଜ ଇଚ୍ଛାନୁସାରେ ତାର ପତି ମନୋନୀତ କରେ । ଯଦି ମୋର କନ୍ୟାମାନଙ୍କ ମଧ୍ୟରୁ କେହି ଆପଣଙ୍କୁ ସ୍ୱାମୀରୂପେ ବରଣ କରିବାକୁ ଇଚ୍ଛା ପ୍ରକାଶ କରେ, ତାହାହେଲେ ମୁଁ ସଙ୍ଗେ ସଙ୍ଗେ ବିବାହୋତ୍ସବର ଆୟୋଜନ କରିଦେବି । ଆପଣଙ୍କ ଭଳି ସୁଯୋଗ୍ୟ ତପସ୍ୱୀଙ୍କୁ ଜାମାତାରୂପରେ ଲାଭ କରିବାକୁ ଲାଳାୟିତ ହେବା ମୋ ପକ୍ଷରେ ଅତି ସ୍ୱାଭାବିକ, ମାତ୍ର ତତ୍ପୂର୍ବରୁ କନ୍ୟାମାନଙ୍କର ସ୍ୱୀକୃତି ଆବଶ୍ୟକ ।"

ସୌଭରି ଏହି ପ୍ରସ୍ତାବରେ ସମ୍ପୂର୍ଣ୍ଣ ସମ୍ମତ ହେଲେ । ତତ୍ପରେ ରାଜା ତାହାଙ୍କୁ ନେଇ ରାଜପୁରୀର ଏକ ସୁସଜ୍ଜିତ ପ୍ରକୋଷ୍ଠରେ ଉପବିଷ୍ଟ କରାଇଲେ ଏବଂ ଅନ୍ତଃପୁରମଧ୍ୟକୁ ଯାଇ ମନ୍ଦୁଷୀ ଓ ତିନି କନ୍ୟାଙ୍କୁ ମହର୍ଷିଙ୍କ ନିକଟକୁ ଡାକି ଆଣିଲେ । ଇତ୍ୟବସରରେ ସୌଭରି ସ୍ୱୀୟ ଜରାଗ୍ରସ୍ତ ରୂପକୁ ତପସ୍ୟାର ଅଦ୍ଭୁତ ପ୍ରଭାବରେ ଯୌବନଶ୍ରୀ-ଢଳଢଳ ଦିବ୍ୟ କାନ୍ତିରେ ପରିଣତ କରାଇଦେଲେ ।

ମନ୍ଦୁଷୀ ଓ କେମା ତିନିହେଁ ଆସି ମହର୍ଷିଙ୍କ ଚରଣତଳେ ନମସ୍କାର କରି ନିଜ ନିଜ ଆସନରେ ବସିଲେ । ମହର୍ଷିଙ୍କର ଯୁବକ-ମୂର୍ତ୍ତି ଦେଖି ରାଜା ତାଙ୍କ ତପୋବଳର ମାହାତ୍ମ୍ୟ ବେଶ୍ ଉପଲବ୍ଧି କରିପାରିଲେ । ସେ ମହର୍ଷିଙ୍କ ଅଭିପ୍ରାୟ ପ୍ରକାଶ କରନ୍ତେ ତିନୋଟିଯାକ କନ୍ୟା ତାହାଙ୍କ ରୂପରେ ମୁଗ୍ଧ ହୋଇଗଲେ ଏବଂ

ପ୍ରତ୍ୟେକେ ମହର୍ଷିଙ୍କୁ ପତିରୂପେ ପାଇବାପାଇଁ ସାଗ୍ରହ ଅଭିଳାଷ ଜ୍ଞାପନ କଲେ ।

ମହର୍ଷି ଅକୁଣ୍ଠିତ ଚିତ୍ତରେ ତିନି ରାଜକନ୍ୟାଙ୍କ ଅଭିଳାଷ ପୂରଣ କରି ସେ ସମସ୍ତଙ୍କୁ ଧର୍ମପତ୍ନୀରୂପେ ଗ୍ରହଣ କରିବାପାଇଁ ସ୍ୱୀକୃତ ହେଲେ । ଯଥାସମୟରେ ପରିଣୟ କାର୍ଯ୍ୟ ସମ୍ପାଦିତ ହେଲା । ଏକ ସ୍ୱତନ୍ତ୍ର ରାଜପ୍ରାସାଦରେ ଜାମାତା ଓ କନ୍ୟାମାନଙ୍କର ରହିବାପାଇଁ ରାଜା ବ୍ୟବସ୍ଥା କରିଦେଲେ ।

—୪—

ସ୍ୱର୍ଗାଧିପତି ଇନ୍ଦ୍ରଙ୍କର ହଠାତ୍ ଆବିର୍ଭାବ·· ···

ମହର୍ଷି ତିନି ପତ୍ନୀଙ୍କ ସହ ଚତୁର୍ଦୋଳାରେ ବସି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ରାଜପ୍ରାସାଦ ଅଭିମୁଖରେ ଯାଉଛନ୍ତି, ଏହି ସମୟରେ ଇନ୍ଦ୍ରଦେବ ସମ୍ମୁଖରେ ଆସି ଉଭା ହୋଇଗଲେ । ସୋଭରି ତତ୍‌କ୍ଷଣାତ୍ ଚତୁର୍ଦୋଳାରୁ ଓହ୍ଲାଇପଡ଼ି ଦେବରାଜଙ୍କୁ ସ୍ତୁତି କରିବାକୁ ଲାଗିଲେ । ତାଙ୍କର ସେହି ସ୍ତୁତିରେ ସନ୍ତୁଷ୍ଟ ହୋଇ ଇନ୍ଦ୍ର ତିନୋଟି ବର ପ୍ରାର୍ଥନା କରିବାକୁ କହିଲେ । ସୋଭରି ଦେବାନୁଗ୍ରହ ପାଇ କୃତ୍ୟକୃତ୍ୟ ହୋଇଗଲେ ଏବଂ କରଯୋଡ଼ି ବରଭିକ୍ଷା କଲେ :

"ଦେବେଶ୍ୱର ! ମୋର ଏହି କୃତ୍ରିମ ଯୌବନର ସ୍ୱାସ୍ଥ୍ୟ ମୁଁ ଇଚ୍ଛା କରୁଥିବା ପର୍ଯ୍ୟନ୍ତ ସ୍ଥାୟୀ ହେଉ; ମୋର ଧର୍ମପତ୍ନୀମାନଙ୍କ ହୃଦୟରେ ପରସ୍ପର ପ୍ରତି ଆଦୌ ଅସୂୟା ନ ରହୁ ଏବଂ ସେମାନେ ସମସ୍ତେ ପୁତ୍ରବତୀ ତଥା ପତିପରାୟଣା ହୋଇ ଆଦର୍ଶ ଜୀବନ-ଧର୍ମ ପାଳନ କରନ୍ତୁ । ମୋର ଗୃହ ଧନଧାନ୍ୟ ଓ ଗୋମହିଷାଦିରେ

ପୂର୍ଣ୍ଣ ହେଉ । ହେ ଦେବରାଜ ! କୃପାପରବଶ ହୋଇ ମୋତେ ଏହି ତିନୋଟି ବର ପ୍ରଦାନ କରନ୍ତୁ ।"

ସୋଭରି ଯେଉଁ ତିନୋଟି ବର ଯାଚନା କଲେ, ବାସ୍ତବରେ ସେହି ତିନୋଟିଯାକ ଆଦର୍ଶ ସଂସାରୀ ପକ୍ଷରେ ସର୍ବଥା କାମ୍ୟ । ତେଣୁ ଦେବରାଜ ବାସବ ସସ୍ମିତ ମୁଖରେ "ତଥାସ୍ତୁ" ବୋଲି ଉଚ୍ଚାରଣ କରି ଚାହୁଁ ଚାହୁଁ ସ୍ୱର୍ଗଲୋକକୁ ଚାଲିଗଲେ ।

ମହର୍ଷି ସୋଭରି ଏବେ ସଂସାରୀରେ ପରିଣତ ହେଲେ । ପତ୍ନୀ ତିନିହେଁ ଭଗିନୀସ୍ନେହରେ ବାନ୍ଧି ହୋଇ ପ୍ରତିନିୟତ ସ୍ୱାମୀଙ୍କ ସେବାରେ ପୂର୍ଣ୍ଣପ୍ରାଣରେ ନିୟୋଜିତ ରହିଲେ । ସୋଭରିଙ୍କ ଗୃହସ୍ଥଜୀବନ ସାର୍ଥକ ହେଲା । କିଛି କାଳପରେ ପ୍ରତ୍ୟେକ ରାଜକନ୍ୟା ପୁତ୍ରବତୀ ହୋଇ ନାରୀଜନ୍ମ ସଫଳ କଲେ । କ୍ରମେ ସୋଭରିଙ୍କ ଗୃହ ଧନସମ୍ପଦରେ ପରିପୂର୍ଣ୍ଣ ହେଲା । ସେଦିନର ମତ୍ସ୍ୟପରିବାରଟିର ଆନନ୍ଦକୌତୁକ ତାଙ୍କ ମାନସପଟରେ ବାରମ୍ବାର ଅଙ୍କିତ ହୋଇଯାଉଥାଏ । ସେ ମଧ୍ୟ ସନ୍ତାନମାନଙ୍କୁ ଘେନି ବତ୍ସଳତାର ଚରମ ଆନନ୍ଦ ଉପଭୋଗ କରିବାକୁ ଲାଗିଲେ ।

ଏହିରୂପେ କେତେ ବର୍ଷ ପରମ ସୁଖରେ ଅତୀତ ହୋଇଗଲା । ବାତ୍ସଲ୍ୟ କ୍ଷୁଧା ପରିତୃପ୍ତ ହୋଇଯାନ୍ତେ ସୋଭରି କୃତ୍ରିମ ଯୌବନର ଆବରଣଟିକୁ ଶରୀରରୁ ଖସାଇଦେବାକୁ ଇଚ୍ଛା କଲେ । ଇନ୍ଦ୍ରଙ୍କ ବର ଅନୁସାରେ ସଙ୍ଗେ ସଙ୍ଗେ ତାହା କାର୍ଯ୍ୟରେ ପରିଣତ ହୋଇଗଲା । ସୋଭରି ପୁଣି ବୃଦ୍ଧମହର୍ଷିର ରୂପ ପ୍ରାପ୍ତହେଲେ ଏବଂ ସାଂସାରିକ ମୋହରେ ଜଳାଞ୍ଜଳି ଦେଇ ସେହି ମୁହୂର୍ତ୍ତରେ ପ୍ରାସାଦ ଛାଡ଼ି ନିବିଡ଼ ଅରଣ୍ୟମଧ୍ୟକୁ ପ୍ରୟାଣ କଲେ । ସେହିଠାରେ ବସି

ସେ ଗଙ୍ଗାର ସମାଧିରେ ବୁଡ଼ିରହିଲେ ଏବଂ ଶେଷରେ ପରମାତ୍ମାଙ୍କ ସ୍ୱରୂପ ଦର୍ଶନ କରି ମରଣଶରୀର ତ୍ୟାଗ କଲେ ।

ମହର୍ଷି ସୌଭରିଙ୍କ ପତ୍ନୀଗଣ ଆଦର୍ଶ ସାଧ୍ୱୀର ଜୀବନ ଅତିବାହିତ କରୁଥିଲେ । ତେଣୁ ସ୍ୱାମୀଙ୍କ ପଛେ ପଛେ ସେମାନେ ଅରଣ୍ୟକୁ ଯାଇ ତାଙ୍କର ନିକଟରେ ତପଃସାଧନରେ ରତ ହେଲେ । ମହର୍ଷିଙ୍କର ଦେହାବସାନ ସଙ୍ଗେ ସେମାନେ ମଧ୍ୟ ତାଙ୍କର ସହଗାମିନୀ ହୋଇ ଜଗତରେ ସତୀତ୍ୱର ଅକ୍ଷୟ ଯଶ ଅର୍ଜ୍ଜନ କଲେ ।



# ଅନଧ୍ୟାୟ ବିଚାରରୁ ଦେଶର ଦୁର୍ଦ୍ଦଶା

## ( ବେଦ ଗଳ୍ପ )

—୧—

ମେଘବିମୁକ୍ତ ଆକାଶ······

ବର୍ଷାର ଦୁର୍ଦ୍ଦିନ ଅପସରିଯାନ୍ତେ ପୃଥିବୀରେ ଶରତ୍ତର ନିର୍ମଳତା ଫୁଟିଉଠିଲା । ବିଦ୍ୟୁତର ଚହଟ ଚମକ, ବଜ୍ରର ହୃତ୍କମ୍ପନ ଗର୍ଜ୍ଜନ, ସବୁ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । କୁଳିଶଧାରୀ ଇନ୍ଦ୍ର ତାଙ୍କର ଯେଉଁ ଧନୁକୁ ବର୍ଷା ଋତୁରେ ଲୋକମାନଙ୍କ ମଙ୍ଗଳପାଇଁ ଧାରଣ କରିଥିଲେ, ତହିଁରୁ ଏବେ ଗୁଣ କାଢ଼ିନେଲେ । ଏହା ଦେଖି ରାଜା 'ହୈବୃଷ୍ଣ' ନିଜ ଧନୁରେ ଗୁଣ ଚଢ଼ାଇ ଦିଗ୍‌ବିଜୟପାଇଁ ବାହାରିଲେ । ଶରତ୍‌କାଳହିଁ ରାଜାମାନଙ୍କ ପକ୍ଷରେ ଯୁଦ୍ଧଯାତ୍ରାର ସର୍ବୋତ୍କୃଷ୍ଟ ସମୟ ।

ହୈବୃଷ୍ଣ ବିଖ୍ୟାତ ଇକ୍ଷ୍ୱାକୁ ବଂଶର ଏକ ମହାପ୍ରତାପୀ ରାଜା । ତାଙ୍କର ସୁଶାସନରେ ରାଜ୍ୟରେ ପରମ ଶାନ୍ତି ବିରାଜିତ ଥିଲା । ସେ ନ୍ୟାୟଦଣ୍ଡ ଧରି ବିଚାର କରୁଥିଲେ । ଦୋଷୀକୁ ଶାସ୍ତି ପ୍ରଦାନ ଏବଂ ଗୁଣୀକୁ ପୁରସ୍କାର ଦାନ ତାଙ୍କର ନୀତି ଥିଲା । ନ୍ୟାଯ୍ୟ ବିଚାରପାଇଁ ସେ ବିଚାରପତି ନିଯୁକ୍ତ କରିଥିଲେ ଏବଂ ସେହି ବିଚାରପତିଙ୍କଦ୍ୱାରା ରାଜ୍ୟର ଯାବତୀୟ ବିବାଦ ଅଭିଯୋଗର ନିଷ୍ପତ୍ତି ହେଉଥିଲା । ସ୍ୱୟଂ ରାଜା ସୁଦ୍ଧା ଏହି ନିୟମରୁ ଅବ୍ୟାହତ ପାଉ ନ ଥିଲେ । ତାଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ହେଲେ ସେ ମଧ୍ୟ ସାଧାରଣ

ପ୍ରଜାଙ୍କ ପରି ବୈଶ୍ୱରଥଙ୍କ ଆଦେଶ ପାଳନ କରିବାକୁ ବାଧ୍ୟ ହେଉଥିଲେ । ନ୍ୟାୟର ନିକଟରେ କି ରାଜା କି ପ୍ରଜା, କି ହର୍ମ୍ୟତଳବାସୀ କି କୁଟୀରବାସୀ ସମସ୍ତେ ସମାନ ।

ତ୍ରୈବୃଷ୍ଣଙ୍କ ରାଜ୍ୟ ଅତି ବିଶାଳ । ସେଥିରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ସବୁ ଜାତିର ପ୍ରଜା ବାସ କରୁଥିଲେ । ଧର୍ମପାଳନ କରିବାକୁ ପ୍ରତ୍ୟେକ ବ୍ୟକ୍ତି ନାଗରିକ ସ୍ୱାଧୀନତା ପାଇଥିଲେ । ଦେଶ ଧନଧାନ୍ୟରେ ହସୁଥିଲା—ଖାଦ୍ୟସମ୍ପଦରେ ହସୁଥିଲା । ଅଭାବ କଣ କେହି ଜନେ ହେଲେ ଜାଣୁ ନ ଥିଲେ । ରାଜା ଯେପରି ଧନୁର୍ଦ୍ଧର, ସେହିପରି ଗୁଣୀ, ଧାର୍ମିକ ଓ ପ୍ରଜାପାଳକ । ଋକ୍‌ବେଦର ମନ୍ତ୍ରରେ ତାଙ୍କର ପାରଦର୍ଶିତା ଅପରିସୀମ । ଏହିସବୁ ଗୁଣପାଇଁ ଲୋକେ ତାଙ୍କୁ ଦେବତାସଦୃଶ ପୂଜା କରୁଥିଲେ ।

ମହର୍ଷି 'ବୃଶ' ତ୍ରୈବୃଷ୍ଣଙ୍କର କୁଳ ପୁରୋହିତ । ମହର୍ଷି 'ଜନ'ଙ୍କର ପୁତ୍ର ବୋଲି ସେ ଲୋକମୁଖରେ 'ବୃଶଜାନ' ନାମରେ କଥିତ ହେଉଥିଲେ । ବୃଶଜାନଙ୍କର ପାଣ୍ଡିତ୍ୟ ସେତେବେଳେ ରାଜ୍ୟର ସୀମା ଅତିକ୍ରମ କରିଯାଇଥିଲା । ସେ ସାମବେଦ ଗାୟନରେ ଯେପରି ପଟୁ ଥିଲେ, ଅଥର୍ବବେଦର ମନ୍ତ୍ରପ୍ରୟୋଗରେ ମଧ୍ୟ ସେହିପରି ପ୍ରବୀଣ ଥିଲେ । ତାଙ୍କର ଉନ୍ନତ ଲଲାଟରୁ ଉଜ୍ଜ୍ୱଳ ବ୍ରହ୍ମତେଜ ନିର୍ଗତ ହେଉଥିଲା । ତାହା ଦେଖିଲେ ଯେକୌଣସି ବ୍ୟକ୍ତିର ମସ୍ତକ ତାଙ୍କ ପାଦତଳେ ଭକ୍ତିରେ ସ୍ୱତଃ ଅବନତ ହୋଇଯାଉଥିଲା ।

ବୃଶଜାନ ବ୍ରାହ୍ମଣ ଋଷି ହେଲେହେଁ ତାଙ୍କଠାରେ କ୍ଷତ୍ରିୟର ବୀରତ୍ୱ ପରିପୂର୍ଣ୍ଣ ଥିଲା । ତାଙ୍କ ବାହୁରେ ଅସୀମ ବଳ, ମନରେ

ଅଦମ୍ୟ ସାହସ । ଇକ୍ଲାକ୍ର ଯୁଦ୍ଧଭୂମିକୁ ସେ କ୍ରୀଡ଼ାପ୍ରାଙ୍ଗଣ ସଦୃଶ ମନେ କରୁଥିଲେ । ଶରୀରକୁ ବାର୍ଦ୍ଧକ୍ୟ ସ୍ପର୍ଶ କରିଥିଲେ ମଧ୍ୟ ତାଙ୍କୁ ଦୁର୍ବଳ କରିପାରି ନ ଥିଲା । ତାଙ୍କ ଅଙ୍ଗରେ ଶତସିଂହର ବଳ ଦେଖି ତରୁଣ ଅଶ୍ୱାରୋହୀମାନେ ମଧ୍ୟ ତଟସ୍ଥ ହୋଇଯାଉଥିଲେ । ଏଭଳି ସୁଯୋଗ୍ୟ ପୁରୋଧା ପାଇ ରାଜା ନିଜକୁ କୃତାର୍ଥ ମଣୁଥିଲେ ।

ଯେଁ କୌଣସି ଯୁଦ୍ଧ ଅଭିଯାନରେ ବାହାରିଲେ ବୃଶଜାନ ପ୍ରାୟଶଃ ତାଙ୍କର ସହଚର ହୋଇ ଯାଆନ୍ତି ଏବଂ ଯୁଦ୍ଧକ୍ଷେତ୍ରରେ ରାଜାଙ୍କୁ ପ୍ରଭୂତ ସାହାଯ୍ୟ ଓ ମନ୍ତ୍ରଣା ଦାନ କରନ୍ତି । ପ୍ରକୃତରେ ରାଜାଙ୍କର ହରିବଂଶଜୟସବୁ ଏପର୍ଯ୍ୟନ୍ତ କେବଳ ବୃଶଜାନଙ୍କ ସାହଚର୍ଯ୍ୟରେ ସାଫଲ୍ୟମଣ୍ଡିତ ହୋଇଅଛି ।

ଗତାନୁଗତିକ ରୀତିରେ ବୃଶଜାନ ଅଭିଯାନପାଇଁ ପ୍ରସ୍ତୁତ ହୋଇଯାନ୍ତେ ରାଜା ତାଙ୍କୁ ଡାକି କହିଲେ :

"ମହର୍ଷି ! ଆପଣଙ୍କୁ ମୋହର ଗୋଟିଏ ଅନୁରୋଧ ଅଛି । ଆଶା କରେ, ତାହା ଉପେକ୍ଷା କରିବେ ନାହିଁ ।"

ବୃଶଜାନ ବିନୟର ସହ ଉତ୍ତର ଦେଲେ :

"ମହାରାଜ ! ଆଶ୍ରିତ କି କେବେହେଲେ ଆଶ୍ରୟଦାତାର କଥାକୁ ଉପେକ୍ଷା କରିପାରେ ? ଆପଣଙ୍କର ଯେକୌଣସି ଅନୁରୋଧକୁ ଆଦେଶରୂପେ ପାଳନ କରିବା ମୋର କର୍ତ୍ତବ୍ୟ । ଏବେ କହନ୍ତୁ, ଆପଣଙ୍କର କି ଇଚ୍ଛା ?"

ରାଜା ଅତ୍ୟନ୍ତ ତୁଷ୍ଟ ହୋଇ କହିଲେ :

"ଆପଣଙ୍କ ସହାୟତାହିଁ ମୋ ବିଜୟର ମୂଳ କାରଣ । ଆପଣଙ୍କ ମନ୍ତ୍ରବଳରେ ମୋର ଅସ୍ତ୍ର ଆଜିପର୍ଯ୍ୟନ୍ତ କେବେହେଲେ

ବିଫଳ ହୋଇ ନାହିଁ । କିନ୍ତୁ ଏଥର ଆପଣଙ୍କୁ ମୋ ରଥର ଭୂଳନା ଭାର ଗ୍ରହଣ କରିବାକୁ ପଡ଼ିବ । ଆପଣଙ୍କ ଭଳି ନିପୁଣ ସାରଥି ପାଇଲେ ମୁଁ ନିଶ୍ଚିନ୍ତରେ ଦିଗ୍‌ବିଜୟରେ ଯଶସ୍ୱୀ ହୋଇପାରିବି ।”

“ମହାରାଜାଙ୍କର ଇଚ୍ଛାହିଁ ମୋର ଇଚ୍ଛା” କହି ବୃଷଜାନ ଆଗ୍ରହରେ ନିଜର ସମ୍ମତି ଜଣାଇଲେ । ରାଜାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପୁରୋହିତଙ୍କୁ ବିଦାୟ ଦେଇ ଯୁଦ୍ଧଯାତ୍ରାପାଇଁ ସଜ୍ଜିତ ହେବାକୁ ଲାଗିଗଲେ ।

—୨—

ବିଜୟଯାତ୍ରାର ଆଜି ଅନୁକୂଳ ଦିବସ······

ପ୍ରିୟ ପ୍ରଜାକୁଳର ଶୁଭକାମନା ନେଇ ରାଜା ଯୁଦ୍ଧ-ଅଭିଯାନ କରିବେ ! ସେଥିପାଇଁ ଇକ୍ଷ୍ୱାକୁ ନଗରୀ ଆନନ୍ଦକୋଳାହଳରେ ମତ୍ତ ହୋଇଉଠିଛି । ରାଜପଥର ଉଭୟ ପାର୍ଶ୍ୱ ଜନାକୀର୍ଣ୍ଣ । କୁଳନାରୀବୃନ୍ଦ ଦ୍ୱାରଦେଶରେ ପୂର୍ଣ୍ଣକୁମ୍ଭମାନ ସ୍ଥାପନ କରି ଶଙ୍ଖ ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ କରୁଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଉଦ୍‌ଗ୍ରୀବ ନେତ୍ରରେ ରାଜତୋରଣ ଆଡ଼କୁ ଏକଧ୍ୟାନରେ ଅନାଇ ରହିଛନ୍ତି— କେତେବେଳେ ଶୁଭ ମୁହୂର୍ତ୍ତ ଆରମ୍ଭ ହେବ, ରାଜା ଜୈତ୍ରଭୂଷ୍ଟ ଯୁଦ୍ଧରଥରେ ବସି ଦିଗ୍‌ବିଜୟରେ ବାହାରିବେ ।

ଏହି ସମୟରେ ରାଜପଥ ସହସା ନିସ୍ତବ୍ଧଭାବ ଧାରଣ କଲା । ଅଶ୍ୱଟାପୁର ଟପଟପ୍ ଶବ୍ଦ ଘନ ଜନତାର କର୍ଣ୍ଣକୁହରରେ ଆସି ପ୍ରବେଶ କଲା । ଗୃହୁଁ ଗୃହୁଁ ରାଜାଙ୍କ ଜୈତ୍ରରଥ କ୍ଷିପ୍ରବେଗରେ ପ୍ରଧାବିତ ହୋଇ ରାଜମାର୍ଗ ପ୍ରକମ୍ପିତ କରିଦେଲା ।

କି ମନୋହର ସାଜସଜ୍ଜା । ଚାରୋଟି ବଳିଷ୍ଠ ସୁଶିକ୍ଷିତ ଅଶ୍ୱ ରଥରେ ଯୋଚା ହୋଇଛନ୍ତି । ସୁଦୃଢ଼ ମୁଷ୍ଟିରେ ବଲ୍‌ଗା ଧାରଣ

କରି ରାଜପୁରୋଧା ବୃଷଯାନ ରଥର ସମ୍ମୁଖଭାଗରେ ସାରଥି-ଆସନରେ ଉପବିଷ୍ଟ । ବର୍ମକବଚବୃନ୍ଦ ରଣପରିଚ୍ଛଦରେ ଭୂଷିତ ହୋଇଥିବାରୁ ତାଙ୍କର ତପସ୍ୱିଜନୋଚିତ ପ୍ରଶାନ୍ତ ରୂପ ଆଜ ତେଜସ୍ୱର ଅଗ୍ନିମୂର୍ତ୍ତି ଧାରଣ କରିଛି ।

ସାରଥିଙ୍କର କିଞ୍ଚିତ୍ ପଶ୍ଚାଦ୍‌ଦେଶରେ ରାଜା ବୈବୃଷ୍ଟ ବୀରବେଶରେ ସମାସୀନ । ଅବସ୍ଥବ ସାଞ୍ଜୁପରିହିତ । ଶିରରେ ଲୌହ ଶିରସ୍ତ୍ରାଣ, ସ୍କନ୍ଧରେ ବିଶାଳ ଧନୁ, ପୃଷ୍ଠଦେଶରେ ଶରପୂର୍ଣ୍ଣ ତୂଣୀର, ରଥର ଏକ ସ୍ଥାନରେ ଭଲ୍ଲ, ବର୍ଚ୍ଛା, ଢାଲ ପ୍ରଭୃତି ବିବିଧ ଅସ୍ତ୍ରଶସ୍ତ୍ର ରକ୍ଷିତ । ରଜସ୍ୱଳପର୍ଶ୍ୱ ରାଜାଙ୍କ ବର୍ମରେ ଖଚିତ ହୋଇଥିବା ହୀର, ମାଣିକ୍ୟ ଆଦିର ଉଜ୍ଜ୍ୱଳ ଦୀପ୍ତିରେ ନଗରବାସୀଙ୍କ ଚକ୍ଷୁ ଝଲସି ଉଠିଲା । ଅସଂଖ୍ୟ ନରନାରୀ-ବୃନ୍ଦର ବିପୁଳ ଜୟଘୋଷରେ ଦିଗ୍‌ଦିଗନ୍ତ ଧ୍ୱନିତ ହୋଇଗଲା ।

ରଥ ପଛେ ପଛେ ଅଗଣିତ ଯୋଦ୍ଧା ଓ ସୈନ୍ୟସାମନ୍ତ ଅଶ୍ୱପୃଷ୍ଠରେ ବସି ଯାତ୍ରା କଲେ । ସେହି ଘୋଟକମାନଙ୍କ ଦ୍ରୁତ ପଦକ୍ଷେପରେ ମାଗୋତ୍‌ଥିତ ଧୂଳିପଟଳ ଆକାଶ-ବକ୍ଷକୁ ଧୂମାୟିତ କରିଦେଲା । କି ଚମତ୍କାର ଦୃଶ୍ୟ !

ରାଜା ମହାଆନନ୍ଦରେ ଜନତାର ଯୁଦ୍ଧ ସମ୍ବର୍ଦ୍ଧନା ଗ୍ରହଣ କରି ଦିଗ୍‌ବିଜୟରେ ଚାଲିଗଲେ ଏବଂ ସୁଦୂର ବିଦେଶକୁ ଯାଇ ବହୁକାଳ ସଂଗ୍ରାମରେ ବ୍ୟାପୃତ ରହିଲେ । କେତେ ଶତ୍ରୁ ସମ୍ମୁଖ-ଯୁଦ୍ଧରେ ପରାଜିତ ହୋଇ ଅଧୀନତା ସ୍ୱୀକାର କଲେ, କେତେ ବା ରଣଭୂମିରୁ ପୃଷ୍ଠଭଙ୍ଗ ଦେଇ ଭୟରେ ପଳାଇଗଲେ, ପୁଣି କେତେ ସାମନ୍ତ ରାଜା ଅଯଥା ଜନକ୍ଷୟ ନ କରି ଶରଣାପନ୍ନ ହେଲେ ।

ଏହିରୂପେ ସମରପିପାସା ପ୍ରଶମିତ କରି ହୈରୃଷ୍ଣ ଯଥା ସମୟରେ ନିଜ ରାଜ୍ୟକୁ ବିଜୟବାର୍ତ୍ତା କଲେ ।

ରଣଦୂତ ଆଗେ ଆସି ରାଜଧାନୀରେ ଉପସ୍ଥିତ ହେଲା ଏବଂ ମନ୍ତ୍ରୀଙ୍କୁ ରାଜାଙ୍କର ବିଜୟବାର୍ତ୍ତା ଜ୍ଞାପନ କଲା । ନଗରୀରେ ପୁଣି ହର୍ଷର ହାଟ ବସିଗଲା । ରାଜାଙ୍କ ବିଜୟବାର୍ତ୍ତା ଉତ୍ସବ ମହାସମାରୋହରେ ପାଳିତ ହେବା ପାଇଁ ବିରାଟ ଆୟୋଜନ ଚାଲିଲା । ପଥ, ଘାଟ, ପୁର, ଦ୍ୱାର, ସକଳ ସ୍ଥାନ ବିଚିତ୍ର ସାଜସଜ୍ଜାରେ ହସିଉଠିଲା ।

କିଛିଦିନ ପରେ ରାଜା ବିଜୟଗର୍ବରେ ଉତ୍ଫୁଲ୍ଲ ସୈନ୍ୟ-ସାମନ୍ତଙ୍କ ଗହଣରେ ନଗରୀପ୍ରବେଶ କଲେ । ଦିଗ୍‌ବିଜୟୀ ହୈରୃଷ୍ଣ ଓ ସାରଥି ବୃଶଜାନଙ୍କୁ ମନ୍ତ୍ରୀ ସାଦର ଅଭିନନ୍ଦନ ଜଣାଇଲେ । ତୂରୀ, ଭେରୀ, ପଟହ, କାହାଳୀର ସମ୍ମିଳିତ ନାଦରେ ରାଜଧାନୀ କମ୍ପି ଉଠିଲା । କୁଳାଙ୍ଗନାମାନେ ରାଜାଙ୍କ ରଥ ଉପରକୁ ଅଜସ୍ର ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ସେହି ପୁଷ୍ପରାଶିରେ ରାଜମାର୍ଗ ପରିପୂର୍ଣ୍ଣ ହୋଇ ଅପୂର୍ବ ଶୋଭା ଧାରଣ କଲା ।

— ୩ —

ବିରାଟ ଜନସମୁଦ୍ର......

ରଥଚାଳନା ଶେଷକୁ ଅସମ୍ଭବ ହୋଇଗଲା । ଏପରି ଜନତା ରାଜଧାନୀରେ ପୂର୍ବରୁ କେବେ ପରିଦୃଷ୍ଟ ହୋଇ ନଥିଲା । ରାଜାଙ୍କ ନିର୍ଦ୍ଦେଶରେ ବୃଶଜାନ ଖୁବ୍ ସତର୍କତାର ସହିତ ରାଜପୁରୀ-ଅଭିମୁଖରେ ଅତି ଧୀରେ ଧୀରେ ରଥ ଚାଳନା କଲେ ।

ଅଳ୍ପଦୂର ଗଲାପରେ ହଠାତ୍ ଏକ ଆର୍ତ୍ତନାଦ ଶୁଣାଗଲା । ଢୁହୁଁ ଢୁହୁଁ ବାଦ୍ୟ, କୋଳାହଳ ସବୁ ନୀରବ ହୋଇଗଲା । ଲୋକେ

ପରସ୍ପରର ମୁଖକୁ କେବଳ ଅନାଇ ରହିଲେ । କାହାର ତୁଣ୍ଡରୁ କାକସ୍ଫୂର୍ତ୍ତି ହେଲା ନାହିଁ । ଏତେ ବଡ଼ ଆନନ୍ଦଚହଳ ମଧ୍ୟରେ କି ବିପତ୍ତି ଘଟିଲା ବୋଲି ରାଜା ଅନୁସନ୍ଧାନ କଲେ । ଶୁଣିଲେ, ରଥଚକ୍ରର ଘୂର୍ଣ୍ଣନରେ ଦଳିତ ହୋଇଯାଇ ଗୋଟିଏ ନିରୀହ ବ୍ରାହ୍ମଣ-ବାଳକ ମୃତ୍ୟୁମୁଖରେ ପତିତ ହୋଇଅଛି ।

ରାଜା ଓ ସାରଥି ଉଭୟଙ୍କ ମନ ଏହି ଦୁର୍ଘଟଣାରେ ବିଷାଦପୂର୍ଣ୍ଣ ହେଲା । ସମସ୍ତ ଉତ୍ସବ ସେହିଠାରୁ ସ୍ଥଗିତ କରି-ଦେବାକୁ ରାଜା ଆଦେଶ ଦେଲେ । ଭୁଣ୍ଡୀଭୂତ ନରନାରୀଗଣ ସ୍ୱ ସ୍ୱ ଗୃହକୁ ବାହୁଡ଼ିଗଲେ । ରାଜା ନିରତିଶୟ ଦୁଃଖରେ ରାଜପୁରୀରେ ପ୍ରବେଶ କଲେ ।

ବାଳକଟିର ଆକସ୍ମିକ ମୃତ୍ୟୁରେ କିଏ ଦାୟୀ—ରାଜା ନା ସାରଥି ? ନିୟମ ଅନୁସାରେ ବଂଶପତିଙ୍କ ନିକଟରେ ସଙ୍ଗେ ସଙ୍ଗେ ଅଭିଯୋଗ ଆଗତ ହୋଇ ଆଶୁ ବିଚାର ଆରମ୍ଭ ହେଲା । ଇକ୍ଷ୍ୱାକୁ ଓ ବୃଶଜାନ ଉଭୟେ ବିଚାରାଳୟରେ ଉପସ୍ଥିତ ହେଲେ ।

ବିଚାରପତି ପ୍ରଥମେ ରାଜାଙ୍କୁ ତାଙ୍କର ବକ୍ତବ୍ୟ ପ୍ରକାଶ କରିବାକୁ ଅନୁରୋଧ କଲେ ।

ରାଜା କହିଲେ :

"ପୁରୋହିତ ବୃଶଜାନ ମୋ ରଥର ଚାଳକ ଥିଲେ—ମୁଁ ଥିଲି କେବଳ ଆରୋହୀ । ରଥର ଗତି ନିୟନ୍ତ୍ରିତ କରିବା ସାରଥିର କାର୍ଯ୍ୟ । ବୃଶଜାନ ତାହା କରିପାରିଥିଲେ ବାଳକଟିର କଦାପି ଅକାଳମରଣ ଘଟି ନ ଥାନ୍ତା । ତେଣୁ ଏ ମୃତ୍ୟୁରେ ବୃଶଜାନ ହିଁ ଦାୟୀ ଏବଂ ସେଥିଲାଗି ଯାହା ଦଣ୍ଡ ହେବ, ତାହା ତାଙ୍କର କେବଳ ପ୍ରାପ୍ୟ ।"

ଏହା ପରେ ପୁରୋହିତ ବୃଶଜାନ କହିବାକୁ ଆରମ୍ଭ କଲେ :

"ଧର୍ମାବତାର ! ରାଜାଙ୍କର ଯୁକ୍ତି ସମ୍ପୂର୍ଣ୍ଣ ଭିତ୍ତିହୀନ । ରାଜାହିଁ ରଥର ସ୍ୱାମୀ — ମୁଁ ତାଙ୍କର ଆଜ୍ଞାବହ ଚାଳକ ମାତ୍ର । ତାଙ୍କ ଇଚ୍ଛା-ଅନୁସାରେ ମୁଁ ରଥଚାଳନା କରୁଥିଲି । ଦିଗ୍‌ବିଜୟରେ ମୁଁ



[ ବିଚାରପତିଙ୍କ ସମ୍ମୁଖରେ ରାଜା ଓ ସାରଥି ]

ସାରଥିର କାର୍ଯ୍ୟ କରିଥିଲେ ହେଁ ବିଜୟର ଫଳ ତାଙ୍କର — ମୁଁ କଦାପି ସେହି ଶୁଭ ଫଳର ଅଧିକାରୀ ହୋଇନାହିଁ । ଶୁଭ ଫଳରେ ଯଦି ମୁଁ ଭାଗୀ ହୋଇ ନାହିଁ, ଏ ଅଶୁଭ ଫଳରେ କିପରି ଭାଗୀ ହେବି ? ଏଣୁ ରାଜା ହିଁ ଉକ୍ତ ବାଳକଟିର ମୃତ୍ୟୁ ପାଇଁ ଏକମାତ୍ର ଦାୟୀ । ତାଙ୍କ ବ୍ୟତୀତ ଅନ୍ୟ କେହି ଦଣ୍ଡଭୋଗ କରିବା ଅନୁଚିତ ।"

ବଶିଷ୍ଠଉପରେ ବିଷମ ସଙ୍କଟରେ ପଡ଼ିଲେ । ସେ ଦେଖିଲେ ପୁରୋହିତଙ୍କ ଯୁକ୍ତି ପ୍ରକୃତରେ ଯଥାର୍ଥ । ମାତ୍ର ଯଦି ରାଜାଙ୍କୁ ଦୋଷୀ ବୋଲି ସେ ମୀମାଂସା କରନ୍ତି, ତାହାହେଲେ ନିଜକୁ ନିଶ୍ଚୟ ରାଜ୍ୟରୁ ବିତାଡ଼ିତ ହେବାକୁ ପଡ଼ିବ । ଏଣୁ ସ୍ୱୀୟ ସ୍ୱାର୍ଥସଂରକ୍ଷଣପାଇଁ ତଥା ରାଜାଙ୍କ ଇଙ୍ଗିତ ପାଇ ସେ ବୃଶଜାନଙ୍କୁ ଦୋଷୀ ବୋଲି ଘୋଷଣା କରି ନିର୍ବାସନ ଦଣ୍ଡ ଦେଲେ ।

ଏଭଳି ଅନ୍ୟାୟ ବିଚାରରେ ରାଜପୁରୋହିତ ବଡ଼ ମର୍ମାହତ ହେଲେ; ମାତ୍ର ଉକ୍ତ ବିଷୟରେ ଅଧିକ ମସ୍ତିଷ୍କଚାଳନା କରିବାକୁ ସେତେବେଳେ ତାଙ୍କର ଅବସର ନ ଥିଲା । ମୃତ ବାଳକଟିର ଚିନ୍ତା ତାଙ୍କୁ ବଡ଼ ବିବ୍ରତ କରିପକାଇଥିଲା । ସେ ସଙ୍ଗେ ସଙ୍ଗେ ଶବନିକଟକୁ ଯାଇ ଅଥର୍ବବିଦ୍ୟା ପ୍ରୟୋଗ କଲେ ଏବଂ ତତ୍ପରେ ପୂଜାଦି କ୍ରିୟା ଶେଷ କରି ସଞ୍ଜୀବନୀ ମନ୍ତ୍ର ପାଠକଲେ । ଆଶ୍ଚର୍ଯ୍ୟର କଥା, ମନ୍ତ୍ରପାଠ ଶେଷ ହେଲାବେଳକୁ ବାଳକଟି ଚକ୍ଷୁ ଖୋଲି ଉଠି ବସିଲା । ଏହିରୂପେ ମୃତ ବାଳକଟି ପୁନର୍ଜୀବନ ଲାଭ କଲା ।

ଏହାପରେ ବୃଶଜାନ ଦଣ୍ଡାଦେଶ ଅନୁଯାୟୀ ରାଜ୍ୟ ତ୍ୟାଗ କରି ଚାଲିଗଲେ । ଯେଉଁ ରାଜ୍ୟରେ ନ୍ୟାୟବିଚାରରେ ଏତେ ଅଭାବ, ସେଠାରେ ରହିବାକୁ ତାଙ୍କର ମଧ୍ୟ ତିଳେହେଲେ ସ୍ପୃହା ନ ଥିଲା ।

ସୂର୍ଯ୍ୟଦେବତା ହେଉଛି ଇକ୍ଷ୍ୱାକୁ ବଂଶର ଇଷ୍ଟଦେବ । ସେ ବ୍ରାହ୍ମଣମହର୍ଷି ବୃଶଜାନଙ୍କର ଅପମାନ ସହ୍ୟ କରିପାରିଲେ ନାହିଁ । ତେଣୁ ତାଙ୍କ ତେଜର ସମସ୍ତ ପ୍ରଭାବ ସେ ଇକ୍ଷ୍ୱାକୁ ରାଜ୍ୟରୁ ପ୍ରତ୍ୟାହାର କରିନେଇ ନିଜ ଦେହରେ ସମାବିଷ୍ଟ କଲେ । ଫଳରେ ସେହି ରାଜ୍ୟରେ ଅଗ୍ନିର ଆଉ ଦାହିକାଶକ୍ତି ରହିଲା ନାହିଁ । ଲୋକେ ଯେତେ ଇନ୍ଧନ ଜାଳି ଖାଦ୍ୟ ରନ୍ଧନ କରିବାକୁ ଗଲେ, ଖାଦ୍ୟ ଆଦୌ ସିଦ୍ଧ ହେଲା ନାହିଁ । ଗୃହରେ ଖାଦ୍ୟପଦାର୍ଥର

ଉପକରଣ ସଞ୍ଚିତ ଥିଲେ ହେଁ କୌଣସି ଲୋକ ପାକ କରିବାକୁ ସମର୍ଥ ହୋଇପାରିଲେ ନାହିଁ । ଖାଦ୍ୟାଭାବରେ ରାଜାଙ୍କଠାରୁ ଆରମ୍ଭ କରି ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତେ କ୍ଷୁଧାର ପ୍ରବଳ ତାଡ଼ନାରେ ଅସ୍ଥିର ହୋଇଉଠିଲେ । ସମଗ୍ର ରାଜ୍ୟରେ ହାହାକାର ପଡ଼ିଗଲା । କେତେ ଲୋକଙ୍କର ଯେ ଅକାଳମୃତ୍ୟୁ ଘଟିଲା, ତାର ଇୟତ୍ତା ନାହିଁ ।

ରାଜା ଅନନ୍ୟଗତିକ ହୋଇ ଗଣକମାନଙ୍କୁ ଡାକି ଏହାର କାରଣ ଜିଜ୍ଞାସା କଲେ । କୌଣସି ତେଜସ୍ୱୀ ବ୍ରାହ୍ମଣ ପ୍ରତି ଅପମାନ ହୋଇଥିବାରୁ ରାଜ୍ୟରେ ଏପରି ଉତ୍ପାତ ଘଟିଛି ବୋଲି ଗଣକମାନେ ଉତ୍ତର ଦେଲେ ।

ଏବେ ରାଜା ପ୍ରକୃତ ଦୋଷ ହୃଦୟଙ୍ଗମ କଲେ । ସେ ସଙ୍ଗେ ସଙ୍ଗେ ବିଭିନ୍ନ ରାଜ୍ୟକୁ ଦୂତ ପ୍ରେରଣ କରି ପୁରୋହିତ ବୃଶଜାନଙ୍କୁ ସସମ୍ମାନରେ ଫେରାଇ ଆଣିବାକୁ ଆଦେଶ ଦେଲେ ।

ରାଜାଦେଶ ପାଳିତ ହେଲା । ଦୂତମୁଖରୁ ସମସ୍ତ ଘଟଣା ଶୁଣି ବୃଶଜାନ ଇକ୍ଷ୍ୱାକୁ ରାଜ୍ୟକୁ ପ୍ରତ୍ୟାବୃତ୍ତ ହେଲେ । ରାଜା ତାଙ୍କ-ପ୍ରତି ଆରୋପ କରାଯାଇଥିବା ଅନ୍ୟାୟ ପାଇଁ କ୍ଷମାଭିକ୍ଷା କରିବାରୁ ପୁରୋହିତ ସନ୍ତୁଷ୍ଟ ହେଲେ । ବୃଶଜାନଙ୍କ ହୃଦୟ ସତତ ପର-ଦୁଃଖକାତର; ତେଣୁ ସେ ପ୍ରଜାମାନଙ୍କ ବିପତ୍ତିରେ ଅତିଶୟ ବ୍ୟଥିତ ହୋଇ ସଙ୍ଗେ ସଙ୍ଗେ ଋଗ୍‌ବେଦମନ୍ତ୍ର ଉଚ୍ଚାରଣପୂର୍ବକ ସୂର୍ଯ୍ୟଦେବଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ତାହାଙ୍କ ସ୍ତୁତିରେ ତେଜୋଧାମ ସୂର୍ଯ୍ୟଦେବ ପ୍ରୀତ ହୋଇ ପୁଣି ଇକ୍ଷ୍ୱାକୁ ରାଜ୍ୟରେ ତେଜ ସମ୍ପାତ କଲେ । ଏଣିକି ସମସ୍ତ ଅସୁବିଧା ଦୂରୀଭୂତ ହୋଇଗଲା । ଅଗ୍ନିର ଦାହିକାଶକ୍ତି ପୁନଶ୍ଚ ଫେରିଆସିଲା । ଲୋକେ ସ୍ୱଚ୍ଛନ୍ଦରେ ଖାଦ୍ୟାଦି ପାକ କରି କ୍ଷୁଧା ନିବାରଣପୂର୍ବକ ପୂର୍ବ ଭଳି ଆନନ୍ଦରେ ଜୀବନଯାପନ କଲେ ।

———

# ପୁରୁରବା ଓ ଉର୍ବଶୀ

## ( ବେଦ ଗଳ୍ପ )

—୧—

ମହାଯଶା ମହୀପତି ପୁରୁରବା……

ସେ 'ଏଲ' ବଂଶର ପ୍ରବର୍ତ୍ତକ । ତାଙ୍କର କୀର୍ତ୍ତି-କୌମୁଦୀ କେବଳ ପୃଥିବୀକୁ ଯେ ଆଲୋକିତ କରିଥିଲା ତାହା ନୁହେଁ, ପୃଥିବୀ ଅତିକ୍ରମ କରି ଦେବବସତି ସ୍ୱର୍ଗଲୋକରେ ମଧ୍ୟ ବିସ୍ତାରିତ ହୋଇଥିଲା । ସେ ଥିଲେ ନୃପକୁଳତିଳକ ଓ ସର୍ବଲୋକପୂଜ୍ୟ ।

ପୁରୁରବା ରୂପରେ ଥିଲେ କାର୍ତ୍ତିକେୟ । ତାଙ୍କ ମୁଖମଣ୍ଡଳରେ ଶୌର୍ଯ୍ୟର ପ୍ରଖର ଦୀପ୍ତି, ବଳିଷ୍ଠ ବାହୁରେ ଅମିତ ବିକ୍ରମ, ସମଗ୍ର ଶରୀରରେ ଯୌବନର ଉଚ୍ଛଳ ତରଙ୍ଗ । ଦିଗ୍‌ବିଜୟୀ ପୁରୁରବାଙ୍କ ରାଜତ୍ୱରେ ଅରାତିଗଣ ହୀନବଳ ହୋଇ ନିଜ ନିଜ ରାଜ୍ୟରେ ଭୟରେ କାଳାତିପାତ କରୁଥିଲେ ।

ପୁରୁରବା ଯେଉଁଦିନ ସିଂହାସନ ଆରୋହଣ କରିଥିଲେ, ସେଦିନ ରାଜପୁରୋହିତ ତାଙ୍କର ଉନ୍ନତ କପାଳରେ ରାଜତିଳକ ଦେଇ ଆଶୀର୍ବାଦ କରିବା ସଙ୍ଗେ ସଙ୍ଗେ କହିଥିଲେ :

"ମହାରାଜ ! ଆପଣ ପ୍ରଭୂତ ପୁଣ୍ୟ ଯୋଗେ ଜନ୍ମଗ୍ରହଣ କରିଛନ୍ତି ଏବଂ ସୀମିତ ଜୀବନକାଳମଧ୍ୟରେ ବହୁ ପୁଣ୍ୟ ମଧ୍ୟ ଅର୍ଜ୍ଜନ କରିସାରିଲେଣି । ମାତ୍ର ଗୋଟିଏ କଥା ମନେ ରଖନ୍ତୁ । ଆପଣ ଯଦି ଏ ଆଶ୍ରିତ କୋଟି କୋଟି ପ୍ରଜାଙ୍କୁ ଦୁଃଖବିପଦରୁ ଉଦ୍ଧାର

କରି ସେମାନଙ୍କର ସୁଖଶାନ୍ତି ନ ବଢ଼ନ୍ତି, ତାହାହେଲେ ଆପଣଙ୍କର ସମସ୍ତ ଅର୍ଜିତ ପୁଣ୍ୟ ଅଚିରେ ବିନଷ୍ଟ ହୋଇଯିବ ।”

ମହାରାଜା ଏହା ଶୁଣି ରାଜପୁରୋହିତଙ୍କୁ କହିଥିଲେ :

“ପ୍ରଜାପୁଞ୍ଜର ସୁଖସ୍ୱାଚ୍ଛନ୍ଦ୍ୟବର୍ଦ୍ଧନ ଏବଂ ସମଗ୍ର ରାଜ୍ୟର ସେବକରୂପେ ଜୀବନଧାରଣ—ଏ ଦୁଇଟିକୁ ଜୀବନର ବ୍ରତ କରିବାକୁ ଆଜ ମୁଁ ରାଜଦଣ୍ଡ ଛୁଇଁ ଶପଥ କଲି ।”

ବାସ୍ତବରେ ପୁରୁରବାଙ୍କ ଶାନ୍ତିମୟ ସୁଶାସନରେ ରାଜ୍ୟ ପ୍ରଜାକୁଳର ସୁଖସ୍ୱାଚ୍ଛନ୍ଦ୍ୟ ପୂର୍ବାପେକ୍ଷା ଶତଗୁଣିତ ହୋଇଥିଲା । ଦେବତାମାନେ ମଧ୍ୟ ତାଙ୍କ ଅଶେଷ ଖ୍ୟାତିର ଅଜସ୍ର ପ୍ରଶଂସା କରିବାକୁ ଲାଗିଲେ । ସ୍ୱର୍ଗପତି ଇନ୍ଦ୍ର ବୀରାଗ୍ରଗଣ୍ୟ ପୁରୁରବାଙ୍କ କାର୍ଯ୍ୟରେ ଏତେ ପ୍ରୀତ ହୋଇଗଲେ ଯେ, ଦେବଲୋକର ଅନୁଷ୍ଠିତ ପ୍ରତ୍ୟେକ ବିଶିଷ୍ଟ ଉତ୍ସବରେ ତାହାଙ୍କୁ ଯୋଗ ଦେବାପାଇଁ ଆମନ୍ତ୍ରଣ କଲେ ।

ଏହିପରି ଏକ ଆମନ୍ତ୍ରଣ ପାଇ ଥରେ ପୁରୁରବା ଇନ୍ଦ୍ରସଭାକୁ ଯାଇଥାନ୍ତି । ଦେବନର୍ତ୍ତକୀ ଉର୍ବଶୀ ନିଜ ସୁଲଳିତ କଣ୍ଠର ମଧୁ ମୂର୍ଚ୍ଛନାରେ ଓ କମନୀୟ ଅଙ୍ଗର ଲୀଳାୟିତ ନୃତ୍ୟଭଙ୍ଗୀରେ ଦର୍ଶକମଣ୍ଡଳୀକୁ ବିମୋହିତ କରୁଥାନ୍ତି । ଉର୍ବଶୀଙ୍କର ଚଳଚପଳ ନୃତ୍ୟଲୀଳା ଓ ବୀଣାଜିଣା କଣ୍ଠର ସ୍ୱରଲହରୀ ଶୁଣି ପୁରୁରବା ଆତ୍ମହରା ହୋଇଗଲେ । ରୂପରମା ଉର୍ବଶୀ ମଧ୍ୟ କନ୍ଦର୍ପକାନ୍ତି ପୁରୁରବାଙ୍କ ତ୍ରିଦିବଦୁର୍ଲଭ ରୂପମାଧୁରୀପ୍ରତି ଘନ ଘନ ଦୃଷ୍ଟିପାତ କରିବାକୁ ଲାଗିଲେ ।

ନୃତ୍ୟଗୀତର ଯଥୋଚିତ ପରିବେଷଣରେ ଉର୍ବଶୀଙ୍କର ଉଦାସୀନତା ଲକ୍ଷ୍ୟ କରି ବରୁଣଦେବ ଅତ୍ୟନ୍ତ କୋପାନ୍ୱିତ ହେଲେ

ଏବଂ ସ୍ୱର୍ଗଚ୍ୟୁତ ହୋଇ ମର୍ତ୍ତ୍ୟରେ ଅବସ୍ଥାନ କରିବାପାଇଁ ତାଙ୍କୁ ସର୍ବସମକ୍ଷରେ ଅଭିଶାପ ପ୍ରଦାନ କଲେ ।

ମୁହୂର୍ତ୍ତକମଧ୍ୟରେ ଉର୍ବଶୀ ଭୂତଳମୁଖିନୀ ହେବାକୁ ଆରମ୍ଭ କଲେ । ଏହା ଦେଖି ପୁରୁରବା ସ୍ୱର୍ଗରାଜ୍ୟ ଛାଡ଼ି ଉର୍ବଶୀଙ୍କର ଅନୁସରଣ କଲେ ଏବଂ ତାଙ୍କୁ ମହାସମାଦରରେ ନିଜ ପ୍ରାସାଦକୁ ଘେନିଗଲେ । ମହାରାଜା ତାଙ୍କୁ ମହିଷୀରୂପେ ଅବସ୍ଥାନ କରିବାକୁ ଅନୁରୋଧ କରନ୍ତେ ଉର୍ବଶୀ କହିଲେ :

"ମହାରାଜ ! ଆପଣଙ୍କର ବାସନା ପୂର୍ତ୍ତି କରିବାରେ ମୋର କୌଣସି ଦ୍ୱିଧା ନାହିଁ । ମାତ୍ର ମୋର ଯୋଡ଼ିଏ ସର୍ତ୍ତ ଅଛି । ମୋ ଶଯ୍ୟନପର୍ଯ୍ୟଙ୍କର ପାଦରେ ଦୁଇଟି ମେଷ ପ୍ରତ୍ୟହ ରାତିରେ ଶୃଙ୍ଖଳିତ ହୋଇ ରହିବେ । ସେ ଦୁଇଟି ଯେପରି ଅପହୃତ ହୋଇ ନ ଯାଆନ୍ତି, ତାର ଦାୟିତ୍ୱ ଆପଣଙ୍କର । ପୁଣି ମନେ ରଖନ୍ତୁ, ଯଦି କେବେବେଳେ ଆପଣଙ୍କର ଭୂଷଣହୀନ ରୂପ ମୋ ଦୃଷ୍ଟିରେ ପଡ଼େ, ତେବେ ସେହି ମୁହୂର୍ତ୍ତରେ ମୁଁ ଆପଣଙ୍କୁ ତ୍ୟାଗ କରି ଚାଲିଯିବି ।"

ପୁରୁରବା ଏଥିରେ ସମ୍ମତ ହେଲେ ଏବଂ ଉର୍ବଶୀଙ୍କୁ ପାଇ ମହା ଆନନ୍ଦରେ କାଳହରଣ କରିବାକୁ ଲାଗିଲେ ।

—୨—

ଦେବଲୋକର ଗନ୍ଧର୍ବସମାଜ……

ସ୍ୱର୍ଗବାସିନୀ ଉର୍ବଶୀ ମର୍ତ୍ତ୍ୟରେ ଜଣେ ନୃପତିଙ୍କ ପ୍ରାସାଦରେ ମହିଷୀ ହୋଇ ରହିବା ଗନ୍ଧର୍ବମାନଙ୍କ ଚକ୍ଷୁକୁ ବଡ଼ ଅଶୋଭନୀୟ ଦେଖାଗଲା । ଗନ୍ଧର୍ବକୁଳପ୍ରତି ଏହା ଏକ ଘୋର କଳଙ୍କ ବୋଲି

ସେମାନେ ବସ୍ତିର କଲେ । ପୁଣି ନୃତ୍ୟମନୋରମା ଉର୍ବଶୀଙ୍କ ଅନୁପସ୍ଥିତି ଯୋଗୁ ସ୍ୱର୍ଗଲୋକରେ ଆଉ ପୂର୍ବ ପରି ଉଚ୍ଚକୋଟୀର ନୃତ୍ୟଗୀତ ପରିବେଷିତ ହୋଇପାରିଲା ନାହିଁ । ପ୍ରତ୍ୟେକ ଉତ୍ସବରେ ଉର୍ବଶୀଙ୍କ ଅଭାବ ସ୍ୱର୍ଗବାସୀ ସମସ୍ତେ ନିବିଡ଼ଭାବରେ ଅନୁଭବ କଲେ । ଆନନ୍ଦ-ଆମୋଦମୟ ସରସ ଦେବଭୂମି ଘୋର ନୀରସ ଓ ନିରାନନ୍ଦ ବୋଧ ହେଲା । ଏଣୁ କିପରି ଉର୍ବଶୀ ମର୍ତ୍ତ୍ୟ ଛାଡ଼ି ଦେବପୁରୀକୁ ବାହୁଡ଼ି ଆସିବେ, ସେଥିପାଇଁ ଦେବ, ଗନ୍ଧର୍ବ, ଅପ୍ସରା ସମସ୍ତେ ଚିନ୍ତା କରିବାକୁ ଲାଗିଲେ ।

ଶେଷରେ ଦଳେ ଗନ୍ଧର୍ବ ଉର୍ବଶୀଙ୍କୁ ଉଦ୍ଧାର କରିବାଲାଗି ଦୃଢ଼ ପଣ କରି ଦିନେ ଗଭୀର ରାତିରେ ପୁରୁରବାଙ୍କ 'ପ୍ରତିଷ୍ଠାନପୁର' ପ୍ରାସାଦରେ ଉପସ୍ଥିତ ହେଲେ । ସେତେବେଳେ ଉର୍ବଶୀ ଓ ପୁରୁରବା ଉଭୟେ ଗାଢ଼ ନିଦ୍ରାରେ ଅଭିଭୂତ ଥାଆନ୍ତି । ରତ୍ନମୋତିଖଚିତ ପର୍ଯ୍ୟଙ୍କର ପାଦରେ ରଜ୍ଜୁବଦ୍ଧ ହୋଇ ମେଷଯୋଡ଼ିକ ସୌଧତଳରେ ଶୟନ କରିଥାନ୍ତି । ଗନ୍ଧର୍ବଗଣ ଅତି ସତର୍କତାର ସହିତ ମହାରାଜାଙ୍କର ସେହି ଅନ୍ଧକାରମୟ ନିଭୃତ ପ୍ରକୋଷ୍ଠରେ ପ୍ରବେଶ କରି ଗୋଟିଏ ମେଷକୁ ବନ୍ଧନରଜ୍ଜୁରୁ ମୁକ୍ତ କରିଦେଲେ ଏବଂ ବଳାତ୍କାରରେ ତାହାକୁ ଅପହରଣ କରି ପଲକମଧ୍ୟରେ ସ୍ୱର୍ଗଲୋକକୁ ପଳାଇଯିବାକୁ ବସିଲେ ।

ଅପହୃତ ମେଷଟି ସେତେବେଳେ ଅତି ଆର୍ତ୍ତକଣ୍ଠରେ ଚିତ୍କାର ଛାଡ଼ିଲା । ତାହାର ଏଭଳି ଆକସ୍ମିକ ଦୁର୍ଦ୍ଦଶା ଦେଖି ରଜ୍ଜୁବଦ୍ଧ ଅପର ମେଷଟି ମଧ୍ୟ ଭୟାତୁର ହୋଇ ଉଚ୍ଚରବରେ ଶୃଙ୍ଗ କମ୍ପାଇ-ଦେଲା । ଉଭୟ ମେଷର ଏତାଦୃଶ କରୁଣ ନାଦରେ ଉର୍ବଶୀଙ୍କର ନିଦ୍ରାଭଙ୍ଗ ଘଟିଲା । ସେ ଶଯ୍ୟାରୁ ସହସା ଗାତ୍ରୋତ୍ଥାନ କରି ଅତି

ଉଦ୍‌ବଗ୍ନ ପ୍ରାଣରେ ଅନ୍ଧକାର ମଧ୍ୟରେ ମେଷଟିକୁ ଅନ୍ୱେଷଣ କରିବାକୁ ଲାଗିଲେ ।

ସଙ୍ଗେ ସଙ୍ଗେ ପୁରୁରବା ମଧ୍ୟ ନିଦ୍ରୋତ୍‌ଥିତ ହେଲେ । ସେ ମନସ୍ୱିନୀଙ୍କୁ ସାନ୍ତ୍ୱନା ଦେଇ ତସ୍କର-କବଳରୁ ମେଷଟିକୁ ଉଦ୍ଧାର କରି ଆଣିବେ ବୋଲି ପ୍ରତିଜ୍ଞା କରି ତତ୍‌କ୍ଷଣାତ୍ ଖଡ୍‌ଗ ହସ୍ତରେ ବାହାରି ପଡ଼ିଲେ । ଗାଢ଼ନିଦ୍ରାବଶତଃ ତାଙ୍କର ବାହ୍ୟ ଜ୍ଞାନ ନ ଥିବାରୁ ଦେହର ବେଶଭୂଷା ଶିଥିଳ ହୋଇଯାଇଥିଲା । ସେହି ଅବସ୍ଥାରେ ସେ ଅତି ଅସମ୍ଭାଳ ମନରେ ବାହାରିପଡ଼ି ଦେଖିଲେ, ପଳାୟନପର ଗନ୍ଧର୍ବମାନେ ମେଷ ଘେନି ଅର୍ଦ୍ଧାକାଶ ପର୍ଯ୍ୟନ୍ତ ଚାଲିଗଲେଣି । ଏତେ ଦୂରରେ ଥିଲେ ମଧ୍ୟ ନିଃସହାୟ ମେଷପଶୁଟିର ବିକଳ କ୍ରନ୍ଦନସ୍ୱର ପୁରୁରବାଙ୍କୁ ସ୍ପଷ୍ଟ ଶୁଣାଯାଉଥାଏ ।

ନିମିଷେମାତ୍ର ବିଳମ୍ବ ନ କରି ପୁରୁରବା ବିଦ୍ୟୁତ୍ ଗତିରେ ଗନ୍ଧର୍ବମାନଙ୍କର ପଶ୍ଚାଦ୍ଧାବନ କଲେ । ତାଙ୍କର ଭୀଷଣ ଆକ୍ରମଣ ଦେଖି ଗନ୍ଧର୍ବଗଣ ଭୟରେ ପ୍ରମାଦ ଗଣିଲେ । ଦେଖୁଁ ଦେଖୁଁ ମହାରାଜା ସେମାନଙ୍କର ସମୀପବର୍ତ୍ତୀ ହୋଇଗଲେ । ତାଙ୍କ ତୀକ୍ଷ୍ଣ ଶାଣିତ ଅସିର ଝଣତ୍କାର ଶୁଣି ଭୀତତ୍ରସ୍ତ ଗନ୍ଧର୍ବଦଳ ସଙ୍ଗେ ସଙ୍ଗେ ମେଷଟିକୁ ତାଙ୍କୁ ପ୍ରତ୍ୟର୍ପଣ କରିଦେଇ କ୍ଷମା ଭିକ୍ଷା କଲେ ।

ଏହି ସମୟରେ ଦେବକୂଟରୁ ହଠାତ୍ ଗଗନଦେଶରେ ଅକାଳବିଦ୍ୟୁତ ଚମକିଉଠିଲା । ତାହାରି ଝଲକରେ ପୁରୁରବାଙ୍କର ସର୍ବାବୟବ ଅତି ସ୍ପଷ୍ଟ ରୂପେ ପ୍ରତିଭାତ ହେଲା । ସୌଧଶୀର୍ଷରେ ଦଣ୍ଡାୟମାନ ରହି ଏଣେ ଉର୍ବଶୀ ମରାଳ-ଗ୍ରୀବା ଟେକି ସମସ୍ତ ଦୃଶ୍ୟ ପ୍ରତ୍ୟକ୍ଷ କରୁଥିବା ସମୟରେ ପୁରୁରବାଙ୍କର ଭୂଷଣବିହୀନ ରୂପ ସହସା ତାଙ୍କର ନୟନଗୋଚର ହେଲା । ତେଣୁ ସେ ଦୂର୍ବାର

ପ୍ରତିଶ୍ରୁତି ଅନୁଯାୟୀ ସେହି ମୁହୂର୍ତ୍ତରେ ମହାରାଜାଙ୍କ ପ୍ରାସାଦ ତ୍ୟାଗ କରି ଚାଲିଗଲେ ।

ତେଣେ ପୁରୁରବା ଗନ୍ଧର୍ବମାନଙ୍କ ହସ୍ତରୁ ପ୍ରିୟ ମେଷଟିକୁ ମୁକ୍ତ କରି ବିଜୟ-ଉଲ୍ଲାସରେ ସ୍ତ୍ରୀୟ ରାଜଧର୍ମ୍ମକୁ ପ୍ରତ୍ୟାବର୍ତ୍ତନ କଲେ । ମାତ୍ର ହର୍ଷ ଚଞ୍ଚଳ ପ୍ରାଣରେ ମେଷଟି ଆଣି ଉର୍ବଶୀଙ୍କୁ ଉପହାର ଦେବାକୁ ଯାଇ ଦେଖିଲେ ଶୟନକକ୍ଷ ଶୂନ୍ୟ, ଶଯ୍ୟା ଶ୍ରୀହୀନ—ରୂପସୀ ଉର୍ବଶୀ ଆଉ ନାହାନ୍ତି ।

ଉର୍ବଶୀଙ୍କୁ ହରାଇ ପୁରୁରବା ଅଥୟ ହୋଇ ଉଠିଲେ । ପୂର୍ବ ସର୍ତ୍ତର ବ୍ୟତିକ୍ରମ ଘଟିବାରୁ ଯେ ଉର୍ବଶୀ ଚାଲିଗଲେ, ଏହା ଜାଣିବାକୁ ମହାରାଜାଙ୍କୁ ଅଧିକ ବେଳ ଲାଗିଲା ନାହିଁ ।

—୩—

ମାନବର ହୃଦୟ ସ୍ୱଭାବତଃ ସ୍ନେହଶୀଳ······

ଦେବାଙ୍ଗନାର ଅଦର୍ଶନରେ ମାନବପ୍ରାଣ ବିଚଳିତ ହୋଇଗଲା । ପୁରୁରବାଙ୍କୁ ଏଣିକି ପାନଭୋଜନ, ଶୟନବିଶ୍ରାମ ସବୁ ବିଷବତ୍ ପ୍ରତୀତ ହେଲା । ଉର୍ବଶୀଙ୍କୁ ପାଇବାପାଇଁ ସେ ବ୍ୟାକୁଳ ହୃଦୟରେ ଇତସ୍ତତଃ ଧାବିତ ହେବାକୁ ଲାଗିଲେ ।

କେତେ ଦେଶ ବିଦେଶ, କେତେ ବନ ପର୍ବତ, କେତେ ନଦୀ-ଝର, କେତେ କ୍ଷେତ୍ର-ପ୍ରାନ୍ତର ବୁଲିଲେ, କେତେ ସୂର୍ଯ୍ୟୋଦୟ-ସୂର୍ଯ୍ୟାସ୍ତ ଦେଖିଲେ, କେତେ ବୃଷ୍ଟି-ବାତ୍ୟା ଭୋଗିଲେ, ମାତ୍ର କେଉଁଠାରେ ହେଲେ ସେ ଉର୍ବଶୀଙ୍କର ସନ୍ଧାନ ପାଇଲେ ନାହିଁ । ଥରେ ସେ କୁରୁ ଦେଶର ଗୋଟିଏ ନିର୍ଜନ ଜଳାଶୟ କୂଳରେ ପାଦଚାରଣ କରୁଥିଲେ । ଉକ୍ତ ଜଳାଶୟଟିର ଗଭୀର ଜଳ କାକଚକ୍ଷୁ

ପରି ମଳ ଓ କାଚକେନ୍ଦୁ ପରି ନିର୍ମଳ । ସେହି ସ୍ଫଟିକକଣା ଶୁଭ୍ର ସଲିଳ-ଶଯ୍ୟା ଦେବବାଳାମାନଙ୍କର ଅତି ଲୋଭମୟ ଥିବାରୁ ସେମାନେ ପ୍ରାୟଶଃ ସେଠାକୁ ଆସି ବିହାର କରନ୍ତି ।

ଦୈବାତ୍ ସେଦିନ ଉର୍ବଶୀ ସେଠାରେ ଜଳକେଳି କରୁଥିଲେ । ଅସଂଖ୍ୟ ହଂସହଂସୀଙ୍କ ମେଳରେ ତାଙ୍କର ରୂପଶ୍ରୀ ଶତଗୁଣରେ ଝଟକି ଉଠୁଥାଏ । ଉର୍ବଶୀଙ୍କ ଉପରେ ଦୃଷ୍ଟିପାତ ହେଲାକ୍ଷଣି ପୁରୁରବା ତାଙ୍କୁ ଚିହ୍ନି ପାରିଲେ ଏବଂ ଉନ୍ମତ୍ତପ୍ରାୟ ତାଙ୍କ ଆଡ଼କୁ କର ପ୍ରସାରଣ କରି ଧାଇଁଗଲେ । ବର୍ଷୁକ ମେଘପରି ଉଦ୍‌ବେଗଭରା ଆନତ ଚକ୍ଷୁରେ ସେ କହିଲେ :

"ଉର୍ବଶୀ ! ମୁଁ ଜାଣି ନ ଥିଲି ସ୍ୱର୍ଗବାସୀଙ୍କର ହୃଦୟ ଏଡ଼େ କଠିନ । ମୁଁ ତମ୍ଭେ ପାଇବାକୁ ଧାଇଁଲାବେଳେ ତୁମେ ମୋତେ ନିଷ୍ଠୁର ଖଣ୍ଡିକରେ ପ୍ରତାରିତ କରିଦେଇଛ । ତୁମକୁ ହରାଇ ଆଜି ମୁଁ ରାଜ୍ୟତ୍ୟାଗୀ । ଏବେ ମୋ ସହିତ ରାଜପ୍ରାସାଦକୁ ଆସ ।"

ଏହା ଶୁଣି ଉର୍ବଶୀ ଗମ୍ଭୀର ମୁଖରେ ଉତ୍ତର ଦେଲେ :

"ମହାରାଜ ! ପୂର୍ବ କଥା ଭୁଲିଯାନ୍ତୁ । ଯାହାହେଉ ଥରେ ସ୍ୱଭାବ ପରି-ମୁଁ ଆପଣଙ୍କ ନିକଟକୁ ଯାଇଥିଲି ଏବଂ କିଛି କାଳପରେ ଫେରି-ଆସିଲି । ବାୟୁକୁ ଧରିବା ଯେପରି ଅସମ୍ଭବ, ମୋତେ ପୁଣି ପାଇବା ଆପଣଙ୍କ ପକ୍ଷରେ ସେହିପରି ଦୁରୁହ ।"

ଉର୍ବଶୀଙ୍କର ଏହି ପୁରୁଷବଚନ ପୁରୁରବାଙ୍କୁ ବଡ଼ ଦୁଃସହ ବୋଧ ହେଲା । ଦୁଗ୍ଧଫେନନିଭ ସୁକୋମଳ ଶଯ୍ୟା ଯାହାଙ୍କ ଅଭାବରେ କଣ୍ଟକଠାରୁ ଆହୁରି ଯନ୍ତ୍ରଣାପ୍ରଦ ବୋଧହୁଏ, ସେହି ଉର୍ବଶୀଙ୍କ ମୁଖରୁ ଯେ ଏପରି ଦାରୁଣ ରୁଢ଼ କଥା ବାହାରିବ, ଏହା

ମହାରାଜା ଆଦୌ କଳ୍ପନା କରି ନ ଥିଲେ । ତେଣୁ ସେ ନିଜର ଜୀବନକୁ ଦୁର୍ବହ ମନେ କରି ଆତ୍ମହତ୍ୟା କରିବାକୁ ଉଦ୍ୟତ ହେଲେ ।

ଊର୍ଦ୍ଧ୍ୱରେ ଥାଇ ଗନ୍ଧର୍ବବୃନ୍ଦ ମହାରାଜାଙ୍କ ହୃଦୟର ବ୍ୟାକୁଳତା ଲକ୍ଷ୍ୟ କରୁଥିଲେ । ସେମାନେ ଆଉ ଅଧିକ କାଳ ନିଷ୍ଠୁରତା ଆଚରଣ କରିପାରିଲେ ନାହିଁ । ପୁରୁରବାଙ୍କ ପ୍ରତି ସେମାନଙ୍କ ଅନ୍ତରରେ କରୁଣା ଉଦ୍ରେକ ହେଲା । ତହୁଁ ସେମାନେ ଗୋଟିଏ ଜ୍ୱଳନ୍ତ ଅଗ୍ନିପାତ୍ର ହସ୍ତରେ ଧରି ଜଳାଶୟ ତୀରରେ ଆବିର୍ଭୂତ ହେଲେ ଏବଂ ପୁରୁରବାଙ୍କୁ ସ୍ପଷ୍ଟ କହିଲେ :

"ମହାରାଜ ! ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛ । ଉର୍ବଶୀ ପ୍ରତି ତୁମର ଅତୁଳ ସ୍ନେହ ଏବେ ସ୍ପଷ୍ଟ ଜଣାପଡ଼ୁଛି । ଏହି ଅଗ୍ନି ନେଇ ତୁମେ ଯଜ୍ଞକ୍ରିୟା ସମାପନ କର । ତାହାହେଲେ ତୁମର ମନୋବାଞ୍ଛା ପରିପୂର୍ଣ୍ଣ ହୋଇପାରିବ ।"

ପୁରୁରବା ସେହି ଅଗ୍ନିପାତ୍ରଟି ଧରି ଫେରିଲାବେଳେ ତାଙ୍କ ମନରେ ସନ୍ଦେହଜାତ ହେଲା । ସେ ଭାବିଲେ :

"ଏତେ ଅନୁରୋଧ ସତ୍ତ୍ୱେ ଯେଉଁ ନାରୀ ମୋତେ ପ୍ରତ୍ୟାଖ୍ୟାନ କଲା, ଯଜ୍ଞହାରା କି ସେ କେବେହେଲେ ସ୍ୱତଃ ଫେରିଆସିବ ? ଅସମ୍ଭବ ! ଏହା ନିଶ୍ଚୟ ଗନ୍ଧର୍ବମାନଙ୍କର ଆଉ ଏକ ପ୍ରବଞ୍ଚନା ।"

ଏହିପରି ଭାବି ସେ ଉକ୍ତ ଅଗ୍ନିପାତ୍ରଟିକୁ ଗୋଟିଏ ପିପ୍ପଳ-ବୃକ୍ଷମୂଳରେ ରଖିଦେଇ ନଗରକୁ ପ୍ରତ୍ୟାଗମନ କଲେ । ରାତିରେ ଶଯ୍ୟାକୁ ଯିବାବେଳେ ତାଙ୍କ ମନରେ କେଜାଣି କାହିଁକି ଟିକିଏ ଅନୁତାପ ଆସିଲା । ଗନ୍ଧର୍ବମାନଙ୍କ କଥାକୁ ମିଥ୍ୟାଜ୍ଞାନରେ

ଏତ୍ତଦେବା ଯେ ଯୁକ୍ତିଯୁକ୍ତ ହୋଇ ନାହିଁ, ତାଙ୍କର ଏହି ଧାରଣା ହେଲା ।

ପରଦିନ ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରି ପୁରୁରବା ସେହି ପିପ୍‌ପଳବୃକ୍ଷ ତଳକୁ ଯାଇ ଦେଖିଲେ, ଅଗ୍ନି ନିର୍ବାପିତ ହୋଇ-ଯାଇଛି । ତେଣୁ ଦୁଇଖଣ୍ଡି ପିପ୍‌ପଳଶାଖାର ଘର୍ଷଣଦ୍ୱାରା ଅଗ୍ନି ଉତ୍ପାଦନପୂର୍ବକ ତାହାକୁ ଉକ୍ତ ପାତ୍ରରେ ରଖିଦେଇ ସେ ରାଜଧାନୀକୁ ଫେରିଗଲେ ।

ଦୁଇ ପିପ୍‌ପଳଶାଖା ଓ ଗନ୍ଧର୍ବଙ୍କ ପ୍ରଦତ୍ତ ଆଧାର, ଏହି ତିନି ଦ୍ରବ୍ୟର ସମନ୍ୱୟରେ ଅଗ୍ନି ଆବିର୍ଭୂତ ହୋଇଥିବାରୁ ଯାଜ୍ଞିକମାନେ ଉକ୍ତ ଅଗ୍ନିକୁ ତିନି ଭାଗରେ ବିଭକ୍ତ କରି ବିଧିମତେ ଯଜ୍ଞାନୁଷ୍ଠାନ କଲେ । ସେ ତିନି ଅଗ୍ନିର ନାମ ହେଲା ଆହବନୀୟ, ଗାର୍ହପତ୍ୟ ଓ ଦାକ୍ଷିଣାଗ୍ନି । ଏହିରୂପେ ମର୍ତ୍ତ୍ୟରେ ସେହି ଦିନଠାରୁ ତିନି ଭିନ୍ନ ଆକାରରେ ଯଜ୍ଞାଦି କର୍ମରେ ଅଗ୍ନିପୂଜା ଆରମ୍ଭହେଲା ।

କୌଣସି ଯଜ୍ଞ ବୃଥା ହୁଏ ନାହିଁ । ପୁରୁରବା ମଧ୍ୟ ଯଜ୍ଞର ଫଳସ୍ୱରୂପ ଉର୍ବଶୀଙ୍କୁ ପୁଣି ଫେରି ପାଇଲେ । ତାଙ୍କ ମନୋରଥ ପରିପୂର୍ଣ୍ଣରୂପେ ସିଦ୍ଧ ହେଲା । ଏଣିକି ସେ ଅତି ହୃଷ୍ଟଚିତ୍ତରେ ପୂର୍ବ-ପରି ସୁଖରେ ପ୍ରଜାପାଳନ କରିବାକୁ ଲାଗିଲେ ।

